# ନବଦ୍ୱୀପ-ମାଧୁରୀ

ତୃତୀୟ ଉଲ୍ଲାସ



ଦାଶରଥି ପୁସ୍ତକାଳୟ

ବାଲୁବଜାର, କଟକ-୨

# ନଦୀୟା-ମାଧୁରୀ

## ତୃତୀୟ ଉଲ୍ଲାସ

ବାବା ଜୀ ଶ୍ରୀ ବୈଷ୍ଣବ ଚରଣ ଦାସ ଗୋସ୍ୱାମୀଙ୍କ ବିରଚିତ

ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା ପ୍ରକାଶିତ

ପରିବର୍ତ୍ତିତ ଓ ପରିବର୍ଦ୍ଧିତ



ସମ୍ପୂର୍ଣ୍ଣ ଏକଶତ ଗୀତ

ଖ୍ରୀଷ୍ଟାବ୍ଦ ୧୯୬୦ ଚତୁର୍ଥ ମୁଦ୍ରଣ ଗୌରାବ୍ଦ ୪୭୭

ପ୍ରାପ୍ତିସ୍ଥାନ

ଦାଶରଥି ପୁସ୍ତକାଳୟ

ବାଲୁବଜାର କଟକ

# ଭୂମିକା

ପରମ କରୁଣାମୟ ପତିତପାବନ ଶ୍ରୀ ଶ୍ରୀ ଗୌର ଗୋବିନ୍ଦଙ୍କ ଅଲୌକିକ ଲୀଳାଖେଳା ବୁଝିବା ଦୁଃସାଧ୍ୟ । ଶ୍ରୀ ଶ୍ରୀ ରାଧାକୃଷ୍ଣ ମିଳିତ ତନୁ ପ୍ରେମମୟ ନଦୀୟାବିହାରୀ ଏହି କଳିଯୁଗେ ଧରାଧାମରେ ଅବତୀର୍ଣ୍ଣ ହୋଇ ପାପୀ ପାଷାଣ୍ଡମାନଙ୍କୁ ମୁକ୍ତିପଥ ଦେଖାଇ ଦେଇଅଛନ୍ତି ।

ଅଦ୍ୟାବଧି ସଂକୀର୍ତ୍ତନ ମଣ୍ଡଳୀମାନଙ୍କରେ ସେହି ଗୌରଚନ୍ଦ୍ରଙ୍କ ଅପାର ମହିମା ଗୁଣାବଳୀ ଗାନକରି ଜନସାଧାରଣ ପ୍ରେମାନନ୍ଦ ଲାଭ କରୁଅଛନ୍ତି । ମାତ୍ର ସଂକୀର୍ତ୍ତନୀୟାମାନେ ଯାହା ଗାନ କରନ୍ତି ତାହା ସବୁ ବଙ୍ଗଳା କିମ୍ବା ଓଡ଼ିଆମିଶା ଖଣ୍ଡବଙ୍ଗଳା ଭାଷା ଅଟେ । ଖାଣ୍ଟି ଉତ୍କଳ ଭାଷାରେ କୀର୍ତ୍ତନଗୀତ ଅଧିକ ଦେଖାଯାଏ ନାହିଁ । ସେହି ଅଭାବ ଦୂରକରଣାର୍ଥେ ଏ ଅଧମ ଶ୍ରୀ ଶ୍ରୀ ଗୁରୁଗୌରାଙ୍ଗ ମହାପ୍ରଭୁଙ୍କ ଭରସାରେ ଗୌର ରସମୟ ଗୀତ କେତେକ ରଚନା କରି 'ନଦୀୟା ମାଧୁରୀ' ନାମକ ପୁସ୍ତକର ପ୍ରଥମ ଉଲ୍ଲାସଟି ପ୍ରକାଶ କରାଇଥିଲି, ଉକ୍ତ ପୁସ୍ତକପ୍ରତି ଜନସାଧାରଣଙ୍କର ବିଶେଷ ଆଦର ଦେଖି ଏବଂ ଅନ୍ୟାନ୍ୟ ଭାଗମାନ ନେବା ପାଇଁ ଗ୍ରାହକମାନେ ଅଗ୍ରହ ସହିତ ଲେଖିବାରେ ବର୍ତ୍ତମାନ ପ୍ରଥମ ଦ୍ୱିତୀୟ, ତୃତୀୟ, ଚତୁର୍ଥ ଭାଗ ପ୍ରକାଶ କରିବା ପାଇଁ ସ୍ନେହର ସହିତ ଶ୍ରୀ ଦାଶରଥି ଦାସ ପ୍ରୋପ୍ରାଇଟର, ଦାଶରଥି ପୁସ୍ତକାଳୟ, ବାଲୁବଜାର କଟକଙ୍କୁ ସମସ୍ତ ସ୍ୱତ୍ୱ ଅର୍ପଣ କଲି ।

ଶ୍ରୀ ଶ୍ରୀ ହରିଭକ୍ତ କୁଟୀର
ବାଲୁବଜାର
କଟକ
ତା ୧୦।୪।୩୪

ଭକ୍ତ କୃପାଭିକ୍ଷୁ
ବାବାଜୀ-ବୈଷ୍ଣବଚରଣ ଦାସ
ପ୍ରଣେତା

## ଦ୍ୱିତୀୟ

# ଭୂମିକା

ଏତଦ୍ୱାରା ଶ୍ରୀ ଶ୍ରୀ ଗୌରଭକ୍ତ କୀର୍ତ୍ତନାନନ୍ଦୀମାନଙ୍କୁ ଅବଗତ କରାଉଅଛୁ କି, ଅତ୍ର ନଦୀୟା ମାଧୁରୀ ତୃତୀୟ-ଉଲ୍ଲାସ ପୁସ୍ତକରେ ଇତିପୂର୍ବ ସଂସ୍କରଣଦ୍ୱୟରେ ୯୧ ଗୋଟି ଗୀତ ଦିଆଯାଇଥିଲା, ମାତ୍ର ଏହି ସଂସ୍କରଣରେ ପରିବର୍ତ୍ତନ ଓ ପରିବର୍ଦ୍ଧନ ପୂର୍ବକ ସମ୍ପୂର୍ଣ୍ଣ (୧୦୮) ଏକଶତ ଗୀତ ରଖାଗଲା । ପାଠକପାଠିକାମାନଙ୍କର ପୂର୍ବପରି ଏଥିପ୍ରତି ସମାଦର ହେଲେ କୃତାର୍ଥ ହେବି । ଇତି ।

ଶ୍ରୀ ଶ୍ରୀ ରାଧା ଗୋବିନ୍ଦ ମଠ
ପୋ: ଅ: ଭୋନ୍ତସାହୁ, ଭଦ୍ରକ
ତା ୨୫ । ୨ । ୪୪

ବାବାଜୀ—
ଶ୍ରୀ ବୈଷ୍ଣବଚରଣ ଦାସ ଗୋସ୍ୱାମୀ
ରଚକ

# ନିବେଦନ



ଏହି ନଦୀୟା ମାଧୁରୀ ତୃତୀୟ ଉଲ୍ଲାସ ପୁସ୍ତକ ଖଣ୍ଡିକ ଅମ୍ଭଠାରୁ କଟକ ନିବାସୀ ବାବୁ ଶ୍ରୀ ମୋହନ ଚରଣ ଦାସ ( ମନମୋହନ ପ୍ରେସର ପ୍ରୋପ୍ରାଇଟର ) ଅନୁମତି ନେଇ ଦ୍ୱିତୀୟ ସଂସ୍କରଣ ପର୍ଯ୍ୟନ୍ତ ମୁଦ୍ରଣ କରିଥିଲେ । ବର୍ତ୍ତମାନ ସମସ୍ତ ପୁସ୍ତକ ଶେଷ ହୋଇଯାଇ ଥିବାରୁ ପୁନର୍ବାର ଛାପା କରାଇବା ନିମିତ୍ତ ଖଣ୍ଡିଏ ପୁରୁଣା ପୁସ୍ତକ ନ ପାଇ ଚିନ୍ତିତ ଥିଲି । ଭାଗ୍ୟବଶତଃ ବହୁ ଅନୁସନ୍ଧାନ ଦ୍ୱାରା କଟକ ରଙ୍ଗଳିଅଗଞ୍ଜ ନିବାସୀ ମୋର ଶିଷ୍ୟ ଶ୍ରଦ୍ଧେୟ ଶ୍ରୀମାନ୍ ବାଞ୍ଛାନିଧି ସାହୁଙ୍କଠାରୁ ଏ ପୁସ୍ତକ ଖଣ୍ଡିକ ପ୍ରାପ୍ତ ହୋଇ ଛାପା କରିବାପାଇଁ କଟକସ୍ଥ ଦାଶରଥି ପୁସ୍ତକାଳୟର ପ୍ରୋପ୍ରାଇଟର ଶ୍ରୀ ଦାଶରଥି ଦାସଙ୍କୁ ଏହାର ସ୍ୱତ୍ୱ ସ୍ନେହ ସହିତ ସମର୍ପଣ କଲି । ଏହାକୁ ଦାଶରଥି ବାବୁ ତୃତୀୟ ସଂସ୍କରଣ ରୂପେ ଛାପା କରି ପାରିବେବୋଲି ମୋର ସମ୍ମତି । ଇତି ।

ବାବାଜୀ—

ଶ୍ରୀ ଶ୍ରୀ ରାଧା ଗୋବିନ୍ଦ ମଠ
ପୋଃଅଃ ବୋଟସାହି, କଟକ

ଶ୍ରୀ ବୈଷ୍ଣବ ଚରଣ ଦାସ ଗୋସ୍ୱାମୀ
ତା ୨୫ । ୨ । ୪୦ ।

# ଉତ୍ସର୍ଗ ପତ୍ର

ଯେଉଁ ଭଜନାନନ୍ଦୀ ଓ କୀର୍ତ୍ତନାନନ୍ଦୀ ସିଦ୍ଧ ସାଧକ
ନିଷ୍ପୃହ ବିରକ୍ତ ଗୌରଗତ ପ୍ରାଣ ବୈଷ୍ଣବମାନଙ୍କ
ଅପାର କୃପାବଳରେ ଶ୍ରୀଶ୍ରୀଗୌରଗୁଣାବଳୀ
କୀର୍ତ୍ତନଗୀତ ସମୂହ ଲେଖିବାରେ
ଏ ଅଧମ ସାହାସୀ ହୋଇଅଛି,
ଆଜ ସେହି ମହାତ୍ମାମାନଙ୍କ
ଶ୍ରୀ ପାଦପଦ୍ମରେ ଏହି
"ନଦୀୟା ମାଧୁରୀ"
ତୃତୀୟ ଉଲ୍ଲାସ
ପୁସ୍ତକ
ଖଣ୍ଡିକ ଉତ୍ସର୍ଗ କଲି । ଇତି ।

ଶ୍ରୀ ଶ୍ରୀ ରାଧାଜନ୍ମାଷ୍ଟମୀ
ସନ ୧୯୩୧ ମସିହା

ସାଧୁପଦରଜ ପ୍ରାର୍ଥୀ
ଅଧମ-ଗ୍ରନ୍ଥକାର

# ସୂଚୀପତ୍ର


| ନମ୍ବର | ବିଷୟ | ପୃଷ୍ଠା |
| --- | --- | --- |
| ୬୦ । | ଅସାର ସଂସାର ହରିନାମ ସାର ... | ୪୬ |
| ୭୦ । | ଅନିତ୍ୟ ସଂସାରଟି ଏହୁ ... | ୫୪ |
| ୭ । | ଅପରାଧ ଶୂନ୍ୟ ହୋଇ | ୬ |
| ୪୫ । | ଅନୁକ୍ଷଣେ ଗୋରାରୂପ | ୩୫ |
| ୨୦ । | ଅହାକି ସୁନ୍ଦର ନଦୀୟା ଗୃନ୍ଦ ... ... | ୨୩ |
| ୧୩ । | ଆସ ହେ ଗୌରାଙ୍ଗ ଧନ ... ... | ୧୯ |
| ୧୯ । | ଆସଛେ ଅସରେ ଭାଇ ଗୋରା ... ... | ୧୪ |
| ୩୭ । | ଅହା ମୋ ଗଉର ସୁନ୍ଦର ... ... | ୨୯ |
| ୪୮ । | ଆଣିଚନ୍ଦ୍ର ନିତ୍ୟାନନ୍ଦ ... | ୩୭ |
| ୫୬ । | ଆସ ଭାଇ ଯିବାରେ ଧାଇଁ ... ... ... | ୪୭ |
| ୭୫ । | ଆସ ଗୋ ସହୁ ସଙ୍ଗାତ ... ... ... | ୫୯ |
| ୯୩ । | ଅହା ମୋ ଗୋରାଗୃନ୍ଦ ନିମାଇଁ | ୭୪ |
| ୯୮ । | ଅରେ ମୂଢ଼ ମନ ଶୁଣ ... ... | ୭୮ |
| ୧୦୦ । | ଆସରେ ଆସରେ ଭାଇ ଆସ ଆସ ... ... | ୮୦ |
| ୪୪ । | ଏ ଯୁଗ ସେହୁ ଗୋ ସହୁ ! ... ... | ୩୪ |
| ୬୧ । | ଏତିକ ପ୍ରାର୍ଥନା ପ୍ରଭୁ ... ... | ୪୭ |
| ୮୭ । | ଏହୁ ମୋ ଚିତ୍ତ ବଡ଼ ବୈରୀ | ୬୯ |
| ୯୧ । | ଏହୁତ ସେହୁ ଚରଣ ଚିହ୍ନ | ୭୨ |
| ୧୬ । | ଚେତେ ଆନନ୍ଦରେ ଶ୍ରୀଗୌର | ୧୧ |
| ୨୦ । | କି ଦେଖିଲ ସଜନୀ ଗୋ ... | [illegible] |
| ୫୧ । | ଭଲଯୁଗ ଧର୍ମ ସଂକୀର୍ତ୍ତନ | ୪୦ |

| ନମ୍ବର | ବିଷୟ | ପୃଷ୍ଠା |
|---|---|---|
| ୬୨ । | ଉଠୁଣା ବଠୁଣା ଉଦୟ | ୪୭ |
| ୩୮ । | ଭାଙ୍ଗାର କ ରୁଣକଣି ... | ୨୭ |
| ୯୮ । | ଭାଲ ନୁହେଁରେ ଗୃଲ ... | ୬୩ |
| ୬୭ । | କ ଘର ସୁଖରେ ଭୁଲିଛୁ ... | ୪୨ |
| ୫ । | କୁସୁମ ଦୋଳି ପରେ ... ... | ୩୯ |
| ୨୫ । | କେବେ ଶ୍ରୀଗୌରାଙ୍ଗ ପଦେ ... | ୨୦ |
| ୮୫ । | କେଡ଼େ ସୁନ୍ଦର ଗୋ କଳା ଗୋରା ... | ୬– |
| ୮୮ । | କେ ଦେଖିଛ ଭାଇ ... ... | ୭୦ |
| ୯୨ । | କ ଅଦ୍ଭୁତ ସଜନୀ ଗୋ ... ... | ୭୩ |
| ୯୪ । | ଭାଦ୍ର କାନ୍ଦ ଭରି ନୟନର ବାରି ... | ୭୫ |
| ୩୬ । | ଗଜର ଚରଣେ ମୋର ମନ | ୩୧ |
| ୧୧ । | ଗାଅ ଗୋରା ନାମ ମଧୁର ସ୍ବରେ | ୮ |
| ୪୦ । | ଗାଅ ଗ ଅ ଭାଇ । ଆଜ ... | ୩୨ |
| ୧୭ । | ଗୌରାଙ୍ଗରୂପଟି ମୋର ... | ୧୩ |
| ୨୨ । | ଗୋରା କ ମନ୍ତ୍ର ଜାଣିଛି ଗୋ | ୧୭ |
| ୪୬ । | ଗଉର ମୋହନର ଭଜନ ପୂଜନ ... | ୩୫ |
| ୬୪ । | ଗୌରାଙ୍ଗ ସୁନ୍ଦର ନଟ ପୁରନ୍ଦର | ୫୮ |
| ୫୩ । | ଚମତ୍କାର ରୂପରାଶି ... ... | ୪୧ |
| ୬୮ । | ଚାଲ ଯିବାରେ ଭାଇ | ୫୩ |
| ୨୪ । | ଚିତ୍ତଚୋର ଗୋରା ଶ୍ରୀଅଙ୍ଗ | ୧୮ |
| ୧ । | ଜୟ ପତିତପାବନ ... | ୧ |
| ୩ । | ଜୟ ଜୟ ନିତ୍ୟାନନ୍ଦ | ୩ |
| ୧୫ । | ଜୟ ଜୟ ଶ୍ରୀଗୌରାଙ୍ଗ ଅଦ୍ଭୁତ | ୧୧ |
| ୨୧ । | ଜଗତ୍ଜନ ବନ୍ଦ୍ୟ ଗୌର | ୧୬ |

| ନମ୍ବର | ବିଷୟ | ପୃଷ୍ଠା |
|---|---|---|
| ୯୨ । | ଜୀବନ ଯାଉଛି ଲଉଲଉ ... ... | ୭୭ |
| ୯ । | ଠାକୁଅ ଝୁଲଇ ବାଇଅ ବଜା ... ... | ୭ |
| ୯୦ । | ତୁଲସୀ ମାଳିଆ ପ୍ରେମପାଗଳିଆ ... ... | ୬୧ |
| ୭୭ । | ଦୀନବନ୍ଧୁ । ମୋ ଦୁଃଖ କହୁବ ... | ୨୧ |
| ୧୪ । | ଦେଖିବ ପଶୁ ଆସ ଗୋ ... ... ... | ୬୦ |
| ୬୩ । | ଧନ ମଦେ ମନ ହେଜ ଛନ ଛନ ... ... | ୪୮ |
| ୪ । | ନଦୀୟା ବଜାରେ ଅଛ ... ... ... | ୪ |
| ୧୲ । | ନଦୀୟା ନାଗର ଗୌର | ୧୩ |
| ୬୯ । | ନଦୀୟା ବିହାରୀ ନଟନ ... | ୫୩ |
| ୭୨ । | ନଦୀୟା ବଜାରେ ଚହଳ ... ... ... | ୫୭ |
| ୯୫ । | ନବଦ୍ୱୀପ-ପୂର୍ଣ୍ଣଚନ୍ଦ୍ର ହେ ... | ୭୨ |
| ୯୬ । | ନାମ ରସାୟନ-ପାନ କର ମନ ... | ୭୭ |
| ୮ । | ପ୍ରେମଭକ୍ତି ଭରେ ଭର ... | ୭ |
| ୫୦ । | ପ୍ରିୟ ପାରିଷଦ ସଙ୍ଗେ ... | ୩୮ |
| ୨ । | ବନ୍ଦେ ଶ୍ରୀଗୌରଚନ୍ଦ୍ର | ୨ |
| ୪୧ । | ବଡ଼ ଦାଣ୍ଡେ ହେ ଯାଉଛୁ ... ... | ୩୨ |
| ୫୪ । | ବନ୍ଧୁ ବୋଲି କର ଯାହାକୁ ... | ୪୧ |
| ୪୭ । | ବ୍ରଜଭବେ ଗୌରଚନ୍ଦ୍ର ... ... | ୩୨ |
| ୮୪ । | ବାଜି ଯିବଟି ହେ ତୁମ୍ଭ ନାମେ ... | ୬୭ |
| ୧୦ । | ବିଶ୍ୱମ୍ଭର ଲକ୍ଷ୍ମୀପତି ... ... | ୮ |
| ୫୮ । | ବୈଷ୍ଣବ ଗୋସାଇଁଙ୍କର ... ... ... | ୪୯ |
| ୬୩ । | ଭଜ ଭୁରେ ମନ ଶ୍ରୀଗୌର ... | ୫୮ |
| ୭୧ । | ଭବ କନାନନ ହେମନ୍ତ ... .. | ୫୭ |
| ୩୦ । | ଭାବାବେଶେ ଗୌରଚନ୍ଦ୍ର ... — — | ୨୩ |

| ନମ୍ବର | ବିଷୟ | ପୃଷ୍ଠା |
|---|---|---|
| ୫୯ । | ଭୁଲ ମନରେ ଭଜ ହେଲୁ ... ... | ୪୦ |
| ୪୯ । | ମନ ଛୋଟେ ବୁଝାଇ କହୁଛୁ | ୩୭ |
| ୪୨ । | ମାୟା ଜଞ୍ଜାଳେ ହୁଅନା ଘାଣ୍ଟି | ୩୩ |
| ୬୪ । | ମିଳିବ କି ସେବାଧନ ହେ ... | ୪୯ |
| ୨୩ । | ମିଶ୍ରଜଗନ୍ନାଥ ସୁତ | ୧୭ |
| ୩୩ । | ମୁଖେ ହରି ହରି ବୋଲ | ୨୨ |
| ୭୭ । | ମୂଢ଼ ମାନସରେ ଦୃଢ଼ କର ... | ୬୦ |
| ୫୭ । | ମୋ କରମ ବଡ଼ ଊଣାରେ ... | ୧୩ |
| ୮୬ । | ଯାଜ୍ୟରେ ନାଭି କୁଳ ଲେ ... ... | ୬୮ |
| ୨୭ । | ରସିକା ରମଣୀ କେବା ଗୋ ... | ୨୧ |
| ୩୧ । | ରତ୍ନସିଂହାସନେ ବିଜେ ... | ୨୪ |
| ୩୫ । | ଶରଣ ସମ୍ଭାଳି ପାରିବ କି ନାହିଁ | ୨୮ |
| ୪୩ । | ଶାନ୍ତିପୁରନାଥ ପ୍ରଭୁ ... | ୩୩ |
| ୫୫ । | ଶ୍ରୀ ନବଦ୍ୱୀପ ଚନ୍ଦ୍ରମା ... | ୪୨ |
| ୬୬ । | ଶ୍ରୀଗୁରୁ ଗୌରାଙ୍ଗ କେବେ ... | ୫୧ |
| ୮୩ । | ଷୋଳନାମ ବତିଶ ଅକ୍ଷରେ ... | ୬୬ |
| ୬ । | ସତେ କି ଶ୍ରୀଗୁରୁ କରୁଣା ... ... | ୫ |
| ୫ । | ସ୍ୱର୍ଣ୍ଣ-ମେଘ ଗଜର ... | ୪ |
| ୮୦ । | ସତେ କି କୃପା-ହୋଇବ ... ... | ୬୪ |
| ୮୧ । | ସରିବ କେବେ ମୋ ଜୀବନ ଜାତ ... | ୬୫ |
| ୮୯ । | ସତେ କି ନଦୀୟା ଉଦଅଗ୍ରତ | ୭୧ |
| ୮୨ । | ସ୍ୱପନ ପ୍ରତିମା ମୋର ଗଜର ... | ୬୬ |
| ୯୨ । | ସିଂହ ଦୁଆରେ ଆନନ୍ଦ ବଜାର ... | ୯ |
| ୩୮ । | ସୁରଧୁନୀ ତଟେ ମୁରଲୀ ... ... | ୩୦ |

| ନମ୍ବର | ବିଷୟ | | | ପୃଷ୍ଠା |
|---|---|---|---|---|
| ୬୫ । | ହେ ଶ୍ରାବଣେ ଭେଙ୍ଗ ଭାର୍ଝିରେ | | | ୪୯ |
| ୬୮ । | ହରି ସଂକୀର୍ତ୍ତନେ ଆସ ଭାଇ | ... | ... | ୨୨ |
| ୬୨ । | ହରି ସଂକୀର୍ତ୍ତନେ ଭସ୍ମାନ୍ତ | ... | ... | ୨୫ |
| ୬୭ । | ହରେ କୃଷ୍ଣ ମହାମନ୍ତ୍ର | | ... | ୨୯ |
| ୯୯ । | ହରି ହରି ବୋଲ ଭାଇ | ... | ... | ୭୯ |
| ୭୯ । | ହା ଗୌରାଙ୍ଗ ବୋଲି କେବେ | | | ୭୩ |
| ୨୯ । | ହେ ଗୌରାଙ୍ଗ ଭଙ୍ଗ ନ ହେଉ | ... | | ୨୦ |

( ସୂଚୀପତ୍ର ସମାପ୍ତ )

—*—

# ନବାମୃ-ମାଧୁରୀ

## ତୃତୀୟ ଉଲ୍ଲାସ

### ମଙ୍ଗଳାଚରଣଂ

( ଶ୍ରୀ ଶ୍ରୀ ଗୁରୁ ଗୌରାଙ୍ଗ ଦେବାୟ ନମଃ )

ଗୁରୁବ୍ରହ୍ମା ଗୁରୁର୍ବିଷ୍ଣୁ ଗୁରୁଦେବ ମହେଶ୍ୱର ।
ଗୁରୁ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀଗୁରବେ ନମଃ ॥

### ପ୍ରଥମ ବନ୍ଦନା

### ଶ୍ରୀ ଗୁରୁଙ୍କ ପ୍ରତି

୧ ( ରାଗ—ମଙ୍ଗଳ )

ଜୟ ପତିତ ପାବନ ଶ୍ରୀଗୁରୁ ଗୋସାଇଁ ।
ତବ ଶ୍ରୀ ପଦାରବିନ୍ଦେ ସଦା ପ୍ରଣମଇଁ ହେ ।୧।
ତୁମ୍ଭେ ବ୍ରହ୍ମା ତୁମ୍ଭେ ବିଷ୍ଣୁ ତୁମ୍ଭେ ମହେଶ୍ୱର ।
ସାକ୍ଷାତେ ପରମ ବ୍ରହ୍ମ ଭକ୍ତ ଅବତାର ହେ ।୨।
ଯାହାଙ୍କ ଆଜ୍ଞାବଳେ ପଙ୍ଗୁ ଲଙ୍ଘେ ଗିରିବର ।
ମୂକ ଜନେ ଗାଏ ଗୀତ ସଦୟେ ଯାହାର ହେ ।୩।
ଏମନ୍ତ ଶ୍ରୀଗୁରୁ ଦେବ ପଦେ ମୋର ଆଶ ।
ମାଗେ କୃପା ଭଣିତା ଏ ଚରଣର ଦାସ ହେ ।୪।

———

# ଦ୍ୱିତୀୟ ବନ୍ଦନା

## ଶ୍ରୀ ଗୌରଚନ୍ଦ୍ରଙ୍କ ପ୍ରତି

ବନ୍ଦେ ଶ୍ରୀ କୃଷ୍ଣଚୈତନ୍ୟ ଦେବଂ ତଂ କରୁଣାର୍ଣ୍ଣବଂ ।
କଳାବପ୍ୟତି ଗୂଢ଼େୟଂ ଭକ୍ତିର୍ଯେନ ପ୍ରକାଶିତା ॥

୧—( ଶ୍ରୀମନ୍ନବଦ୍ୱୀପ କିଶୋର ଚନ୍ଦ୍ର—ଭୃଙ୍ଗେ )

ବନ୍ଦେ ଶ୍ରୀ ଗୌରଚନ୍ଦ୍ର ପଦାରବିନ୍ଦଂ ।
ଜୟତି ଜୟ ନବ ନାଗର ଇନ୍ଦ୍ରଂ
ହା ନାଥ ! ହେ ଭକ୍ତ ହୃଦୟାନନ୍ଦଂ ।
ହା ଶ୍ରୀ ଶଚୀସୁତ ଗୌର-ଗୋବିନ୍ଦଂ ।୧।
ଅଗତି ଗତି ପତିତ ତ୍ରାଣ-କାରୀ ।
ଦୀନ ଦୟାଳୁ ନବଦ୍ୱୀପ-ବିହାରୀ ॥
ତାପ ବିନାଶକ ହେ ପାପହାରୀ ।
ହା ଶ୍ରୀ ବିଶ୍ୱମ୍ଭର କୌପୀନ-ଧାରୀ ।୨।
ଆଜାନୁ ଲମ୍ବିତ ବାହୁବରଦଣ୍ଡଂ ।
କମଳାୟତାକ୍ଷ ସୁବୃତ୍ତ ଗଣ୍ଡଂ ॥
ଯୁଗ ଧର୍ମ ପାଳକ ବାକ୍ୟ ମଧୁ ଖଣ୍ଡଂ ।
କଳି ତମ ସଂହାରକ ମାର୍ତ୍ତଣ୍ଡଂ ।୩।
କରୁଣାର୍ଣ୍ଣବ ଅବତାର ହେ ସ୍ୱାମୀ ।
କନକାଚଳ ଶ୍ରୀ ଦେହ ଅନ୍ତର୍ଯ୍ୟାମୀ ॥
ଅଧମ ବୈଷ୍ଣବ ଦାସ ଅକ୍ଷମୀ ।
ନମାମି ଶ୍ରୀ ପାଦପଦ୍ମେ ନମାମି ।୪।

———

# ତୃତୀୟ ବନ୍ଦନା

## ଶ୍ରୀ ନିତ୍ୟାନନ୍ଦଙ୍କ ପ୍ରତି

ନିତ୍ୟାନନ୍ଦ ପ୍ରଭୁଂ ବନ୍ଦେ କଳିମଳ ବିନାଶନେ ।
ପ୍ରେମ ଭକ୍ତି ପ୍ରଦାନାୟ ଶ୍ରୀ ଅବଧୂତାୟ ନମଃ ।

୩—(ଜୟ ଜୟ ଶ୍ରୀଗୁରୁ ପ୍ରେମ କଳ୍ପତରୁ—ବୃତ୍ତେ)

ଜୟ ଜୟ ନିତ୍ୟାନନ୍ଦ, ପରମ ଆନନ୍ଦ କନ୍ଦ;
ପଦ୍ମାବତୀ ଦେବୀଙ୍କ ନନ୍ଦନ ।
ଜୟ ବଳ ହଳଧର, ଶ୍ରୀକୃଷ୍ଣ ଅଗ୍ରଜବର,
ହାଡ଼ାଇ ପଣ୍ଡିତ ସୁଧନ୍ୟ ।୧।

ଜୟ ଜୟ ଅବଧୂତ, ଯା ମହିମା ଅଦଭୁତ,
ସ୍ମିତ ହାସଯୁତ ଚନ୍ଦ୍ରାନନ ।
ଶ୍ରୀଖଣ୍ଡ ଅଗୁରୁ ଘନ, ସୁଗନ୍ଧ ଚିତ୍ର ବସନ,
ବସୁ ଜାହ୍ନବୀଙ୍କ ପ୍ରାଣଧନ ।୨।

ସୁମାଲ୍ୟ ବାସ ଚନ୍ଦନ, ବିଲେପିତ ଅପଘନ,
ଆଜାନୁ ଲମ୍ବିତ ବାହୁଯୁଗ ।
ଗୌର ନାମ ରସେ ଭୋଳା, ସର୍ବଦା ପ୍ରେମପାଗଳା,
ଆରମ୍ଭିଲ ସଙ୍କୀର୍ତ୍ତନ ଯଜ୍ଞ ।୩।

ଜଗତ୍କାରଣ ତତ୍ତ୍ୱଙ୍କର, ସେହି ଜୀବନ ଠାକୁର
ଯା ମହିମା ଅସଂଖ୍ୟ ଅନନ୍ତ ।
ସେ ପ୍ରଭୁ ଚରଣେ ଆଶ, କରି ବଇଷ୍ଣବ ଦାସ,
ଏ ଗୀତ ଲେଖିଛନ୍ତି ବଳବନ୍ତ ।୪।



## ନାମହାଟ

୪—(ଜୟକୃଷ୍ଣ ଯାନ ଚଣ୍ଡୁ ନବ ଜଳଧର—ବୃତ୍ତେ)

ନଦୀପୁ। ବଜାରେ ଅଛି ଅପୂର୍ବ ଘଟନ ।
ଅସିଛନ୍ତି ତାହା ନିତ୍ୟାନନ୍ଦ ମହାଜନ ହେ ।୧।
ଦୀନ ହୀନ ଲୋକମାନଙ୍କର ହିତ ପାଇଁ ।
ପ୍ରେମାନନ୍ଦେ ନାମ ହାଟ ଅଛନ୍ତି ବସାଇ ହେ ।୨।
ଡାକୁଛନ୍ତି କିଏ ଅଛ ଶ୍ରଦ୍ଧାବାନ ଜନ ?
ବିନା ମୂଲ୍ୟ କିଣି ନିଅ ଗୌର ନାମ ଧନ ହେ ।୩।
ଦ୍ୱାରେ ଦ୍ୱାରେ ବୁଲି ମାଗୁଛନ୍ତି ଏହି ଭିକ୍ଷା ।
ବୋଲ କୃଷ୍ଣ କୃଷ୍ଣ ଭଜ କର ଗୀତ ଶିକ୍ଷା ହେ ।୪।
ବଇଷ୍ଣବ ଦାସ ବୋଲେ ମୁଁ ଅଟେ ଅଧମ ।
ଏହେ ସୁଯୋଗରେ କିଣି ନ ପାରିଲି ନାମ ହେ ।୫।

---

## ଗୌର ନାମାଶ୍ରୟ

୫—( ନବ ନୀରଦ ନିନ୍ଦିତ କାନ୍ତିଧରଂ —ବୃତ୍ତେ )

ସ୍ୱର୍ଣ୍ଣ ଚମ୍ପକ ଗଞ୍ଜିତ କାନ୍ତି ଧାରୀ ।
କଲି ପାବନ ମୂରତି ପାପହାରୀ ।୧।
ନବ ନଟନ ପ୍ରତିମା ଶ୍ରୀମୁରାରୀ ।
ଦୁଃଖ ନାଶନ ହେ କମଣ୍ଡଳୁ-ଧାରୀ ।୨।
ଦୀନ ବାନ୍ଧବ ଗୋବିନ୍ଦ ଦଇତ୍ୟାରି ।
ଅକିଞ୍ଚନେ ଦାନ କର କୃପା-ବାରି ।୩।

କୃଷ୍ଣ ଚୈତନ୍ୟଚନ୍ଦ୍ର, ହେ ପ୍ରାଣବାସ୍ରି ।
ଘୋର ଦୁଃଖ ଜଳଧିରୁ କର ପାର । ୪ ।
ମମ ହୃଦନ୍ତ ବେଳକୁ ହେଳ ଘର ।
ଦାସ ବୈଷ୍ଣବ କରଇ ଏ ଗୁହାସ୍ରି ।୫।



## ପ୍ରତ୍ୟାଶା

୬—(ସତେ ମୋତେ ଗୁରୁଙ୍କର ଆଜ୍ଞାହେବ—ବୃତେ)

ସତେକି ଶ୍ରୀଗୁରୁ କରୁଣା କରିବେ ଗୌରାଙ୍ଗ ଚରଣେ ଭଜିବ ।
ତେଜିଣ ବିଷୟ ବିଷକୁ କେବଳ ଭକତି ରସରେ ମଜ୍ଜିବ । ଘୋଷା ।
ନୟନ ସଫଳ ହୋଇବ ମୋହର ଶ୍ରୀନାମ ସମ୍ପଦ ଅର୍ଜିବ ।
ବଜାରେ ବଜାରେ ବୁଲିଣ ମଜ୍ଝାରେ ନାଚାଇ ନାଚାଇ ଗର୍ଜିବ ।୧।
ଦ୍ୱିବାହୁ ଉଠାଇ ଉଦଣ୍ଡ ନର୍ତ୍ତନେ ଆପଣା ମନକୁ ରଞ୍ଜିବ ।
ପେଟକୁ ଆହାର ମିଳୁ କି ନ ମିଳୁ ବୈଷ୍ଣବ ସଙ୍ଗତି ଖୋଜିବ ।୨।
* ପିପାସୁ ହୋଇ ମୁଁ ନଦୀୟା ନଗରେ କଙ୍ଗାଳ ଯାତନା ଭଞ୍ଜିବ ।
ବିନୟ ବଚନେ ବନ୍ଧୁଙ୍କୁ ସଖୋଳି ଗୁମାନ ବଡ଼ିମା ତେଜିବ । ୩ ।
କଣିକ ଦାସ ମୁଁ ଗୋରାର ବୋଲିଣ କହିବା ପଦକୁ ଖଞ୍ଜିବ ।
ମୁଁଭାର କଥାଟି ଦୂରରେ ପକାଇ ହୁଁଭାର ଶବଦେ ଭଜିବ ।୪।
ସ୍ତ୍ରୀୟାଙ୍କ ବାନ୍ଧବ ନନ୍ଦନ ଦୂତଙ୍କୁ କେ ତୁମ୍ଭେ କୁହାଟି ଚଳିବ ।
ରସିକ ବ୍ରଜଙ୍କ ଝୁଣ୍ଟଣି ସେବାରେ ରତନ ଭୂଷଣ ମାଜିବ ।୫।
ସଂସାର ସଙ୍ଗରେ ସମ୍ବନ୍ଧ ନ ରଖି କାଙ୍ଗାଳ ହେବଟି ସଜିବ ।
କହଇ ବୈଷ୍ଣବ ଚରଣ ଅଧମ *ଅବିଦ୍ୟା ସୁଖକୁ ବର୍ଜିବ ।୬।



*ପିପାସୁ—ଗମନେଚ୍ଛୁ ।    *ଅବିଦ୍ୟା—ମାୟା

## ପାଗଳାମନ

୬—(ଭଜ ମୋ ଭାଳିଆ ଦ୍ୱାଣ—ବୃନ୍ଦେ)

ଅପରାଧ ଶୂନ୍ୟ ହୋଇ ।
ଗୌରକୃଷ୍ଣ ନ ଭଜିଲ୍ କପାଇଁ ରେ, ପାଗଲା ମନ ।
ମାୟାସଂସାରରୁ କି ନେବୁ ବାନ୍ଧିରେ, ପାଗଲା ମନ ।୧।

ନ ଛାଡ଼ିଲ୍ ଅନାଚାର ।
ଭଲ ମନ୍ଦକୁ ନ କଲ୍ ବିଚାର ରେ ପାଗଲା ମନ ।
କୃଷ୍ଣ ନାମ ସର୍ବଧର୍ମ-ସାର ରେ, ପାଗଲା ମନ ।୨।

କୃଷ୍ଣ ମାତା କୃଷ୍ଣ ପିତା
କୃଷ୍ଣ ଧନ ପ୍ରାଣ କୃଷ୍ଣ ଭରତା ରେ, ପାଗଲା ମନ !
ତେବେ ନ ପଢ଼ିଲ୍ କୃଷ୍ଣ ଗୀତାରେ, ପାଗଲା ମନ ।୩।

କୃଷ୍ଣର ସଂସାର ଏହୁ ।
କୃଷ୍ଣ ବିନୁ ଆନ ଶରଣ ନାହିଁ ରେ, ପାଗଲା ମନ ।
କୃଷ୍ଣ କୃଷ୍ଣ ଭଜ ହେବୁ ସ୍ୱାଧିରେ, ପାଗଲା ମନ ।୪।

କୃଷ୍ଣଟି ଜଗତ ଗୁରୁ ।
କୃଷ୍ଣ ଏକା ବାଞ୍ଛା କଳପତରୁ ରେ, ପାଗଲା ମନ ।
ତେବେ ବୁଝାଇଛୁତ ଅଗରୁ ରେ, ପାଗଲା ମନ ।୫।

କୃଷ୍ଣଙ୍କୁ ସର୍ବତ୍ର ଦେଖ ।
ଜୀବେ ଦୟା ନାମେ ବିଶ୍ୱାସ ରଖ ରେ, ପାଗଲା ମନ ।
କହେ ବୈଷ୍ଣବ ଦାସ ନିରେଖ ରେ, ପାଗଲା ମନ ।୬।

—o—

## ଗୌର ଆରାଧନା

୮—( ଭଜ ଭଜ ଭଜ ମନ ରାଧେ କୃଷ୍ଣ ବୋଲ୍—ସୁରେ )

ପ୍ରେମ-ଭକ୍ତି ଭରେ କର ଗୌର ଆରାଧନା ।
ଏକାବେଳେ ଦୂରିବରେ ମନୁ ଦୁର୍ବାସନା
( କର ଗୌର ଆରାଧନା )

( ଘୋଷା )

ଅନ୍ୟ ଅଭିଳାଷେ ଛାଡ଼ ରଖନା ବାସନା ।
ନାମାମୃତ ରସେ ତୃପ୍ତି କରଅ ରସନା । ୧ ।
ସାଧୁସଙ୍ଗ ଛାଡ଼ି ମୂର୍ଖ ଗୋଷ୍ଠିରେ ପଶନା ।
ହରି ଗୁଣ ଗାନ ବିନୁ କାହିଁରେ ରସନା । ୨ ।
ହରିଜନେ ହରିଙ୍କୁ ସମସ୍ତ ଖସନା ।
ନେଇଛୁଁ ଯେ ମୂଳଧନ ହରାଇ ବସନା । ୩ ।
ବୈଷ୍ଣବ ଦାସ ବୋଲେ କର ଆଶ୍ୱାସନା ।
ନ ଲଭ୍ୟ ଯୋହର ମହାପ୍ରଭୁଙ୍କ ଦାସ ନାଁ । ୪ ।
( କର ଗୌର ଆରାଧନା ) ।

—୦—

## ବାଉଆ ରଜା

୯—( ନଦୀୟା ବଜାରେ ଚହଳ ପଡ଼ିଛି—ସୁରେ )

ଚାହଁଅ ଫୁଟଇ ବାଉଆ ରଜାଟି ଧାଇଁ ଆସେ କିସୁନ୍ଦର ।
ଅହସ୍ର ଶ୍ରୀମତୀ ଘରେ କରଜର ନାହିଁ ନଥିବା ସୁନ୍ଦର । ୧ ।
ସାଧୁ ସାଧୁ କରି ନଦୀୟା ନଗରୀ ଯାଉ ଫେରି ବୋଲେ ହରି ।
ବାହୁ ବାହୁ ବୋଲି କାହାକୁ କୋଳରେ ପାର୍ଷଦଙ୍କ କର ଧରି ।୨।

ଯାଇ ଶ୍ରୀନାଥାଇ ଦକ୍ଷିଣରେ ଥାଇ ଦେଖାଏ ପଦ୍ମେ ଗଦ ଗଦ ।
ପାଇଲ ପରଶେ ଅମୂଲ୍ୟ ସମ୍ପଦ ପ୍ରଫୁଲ୍ଲେ ପୂରିତ ହୃଦ । ୩ ।
ଗାଇ ଗାଇ କୃଷ୍ଣ ନାମାବଳୀ ଗୀତ ନେତ୍ରଯୁଗରେ ପ୍ରେମଜଳ ।
ଲଭେ ପାନ ସ୍ଥାନ ବୈଷ୍ଣବ ଦାସ ସେ ବାଞ୍ଛା ମୋର ସମ୍ବଳ ।୪।



## ଶରଣାଗତ

୧୦—( ରାଧା ଧର ସଖୀ ଲର—ବୃତ୍ତେ )

ବିଷ୍ଣୁପ୍ରିୟା ଲକ୍ଷ୍ମୀ ପତି, ପତିତପାବନ ଗୌର ମୂରତି ହେ ।
ଯେତେ ଭକ୍ତବୃନ୍ଦ-ଶରଣାଗତ । ଗୌରାଙ୍ଗ ହେ । ୧ ।
ହେ ସୁରଧୁନୀ କୂଳିଆ । କୃଷ୍ଣେଶ୍ୱରଙ୍କ ପ୍ରେମ ବାଉଳିଆ ହେ ।
ନବଦ୍ୱୀପ ବଜାର ଧୂଳିଆ । ଗୌରାଙ୍ଗ ହେ । ୨ ।
ହରିନାମ କାଙ୍ଗାଳିଆ । ରାଧା ଭାବେ ମନ ଛନଛନିଆ ହେ ।
ଶୁଦ୍ଧ ସୁନା ଗୃହ ବଦନିଆଁ । ଗୌରାଙ୍ଗ ହେ । ୩ ।
ତୁମ୍ଭେଟି ମୋର ସର୍ବସ୍ୱ । ଶଚୀ ନନ୍ଦନ ଭକ୍ତ ଜୀବେଶ ହେ ।
ପାପ ତାପ ଚିନ୍ତ ଭବ ଧ୍ୱଂସ । ଗୌରାଙ୍ଗ ହେ । ୪ ।
ବୈଷ୍ଣବ ଦାସ ଭଣେ । ମତି ରହୁ ତବ ପଦ୍ମ ଚରଣେ ହେ ।
ଅନ୍ୟ ମାର୍ଗରେ ନ ଯାଉ କ୍ଷଣେ । ଗୌରାଙ୍ଗ ହେ । ୫ ।



## ଗୌରନାମ କୀର୍ତ୍ତନ

୧୧—( ମାଲ ମାଲ ହୋଇ ତମାଲ-ମାଳ—ବୃତ୍ତେ )

ଗାଅ ଗୌର ନାମ ମଧୁର ସ୍ୱରେ ।
ହରେ କୃଷ୍ଣ ହରେ କୃଷ୍ଣ ହରେ । ଘୋଷା ।
ଗୃହେ ଥାଅ ଅବା ଥାଅ ବନରେ ।
ହରେ କୃଷ୍ଣ ନାମ ଶୁଣ କର୍ଣ୍ଣରେ । ୧ ।

ଶଚୀ ଦେଇଥିଲେ ନାମ ନିମାଇଁ ।
ଗାଅ ଗାଅ ସଭିଏ ପ୍ରେମେ ଢୁମାଇ । ୨ ।
ଚେତାଇବାରୁ ଶ୍ରୀ ଚୈତନ୍ୟ ନାମ ।
ମୁରଲି ମୂରତ ଶ୍ରୀରାଧା ଶ୍ୟାମ । ୩ ।
ରାଜର ଅଙ୍ଗରୁ ନାମ ଗୌରାଙ୍ଗ ।
ନୋହେ ସମସର କୋଟି ଅନଙ୍ଗ । ୪ ।
ଚକ୍ରବର୍ତ୍ତୀ ଦେଲେ ଏ ନାମ ସାର ।
ବିଶ୍ୱମୋହନ ଯେ ଶ୍ରୀ ବିଶ୍ୱମ୍ଭର । ୫ ।
ଆଉ ଏକ ନାମ ନଦୀୟା ଚାନ୍ଦ ।
ନଦୀୟା ନାଗରୀ ମୋହନ-ଫାନ୍ଦ । ୬ ।
ଗୌରହରି ଗୌର କୃଷ୍ଣ ରାହୁର ।
ଭକତମାନଙ୍କ ନାଥ ବଜର । ୭ ।
ବିଷ୍ଣୁପ୍ରିୟା ନାଥ ଲକ୍ଷ୍ମୀ ବଲ୍ଲଭ ।
ବୈଷ୍ଣବ ଦାସଙ୍କୁ ଏକା ଦୁର୍ଲ୍ଲଭ । ୮ ।

—*—

## ଆନନ୍ଦ ବଜାର

୧୨—( ଅନାଲେ ମିତ, ସୁନ୍ଦର-ଶ୍ୟାମ ରୂପକୁ—ବୃଦ୍ଧେ )

ସିଂହ ଦୁଆରେ, ଆନନ୍ଦ-ବଜାର ବସିଛି ।
କ୍ଷେତ୍ର ପଞ୍ଚକୋଶୀଯାକ ପ୍ରେମ ସିନ୍ଧୁରେ ଭାସୁଛି । ଘୋଷା ।
ଶ୍ରୀ ଗୌରାଙ୍ଗ ନିତ୍ୟାନନ୍ଦ, ଆଚାର୍ଯ୍ୟ ଅଦ୍ୱୈତଚନ୍ଦ୍ର
ଗଦାଧର ଶ୍ରୀବାସାଦି ଭକ୍ତ-ମଣ୍ଡଳୀ ହସୁଛି । ୧ ।
ବାଜଇ ମୃଦଙ୍ଗ ଢୋଲ, ଭେରୀ କାହାଳୀ କଂସାଳ,
ଶଙ୍ଖ ଘଣ୍ଟା ଶବଦରେ ଗଗନ୍ତୁ ଫୁଲ ଖସୁଛି । ୨ ।

ସବୁର ମୁଖରେ ଧନ୍ୟ, ଧନ୍ୟ ଶ୍ରୀ କୃଷ୍ଣ ଚୈତନ୍ୟ
ଗୃହ ଅଛେ ଏହି ନାମ କେଉ ମୁଖେ ଅଭ୍ୟୁତ୍ଥ ।୩।
କହେ ବଇଷ୍ଣବ ଦାସ, ନ ମଣ ଯା ପରିହାସ,
ପାଷଣ୍ଡ ଦଳନ ବାନା ନବୀଣ ଦେଖ ଉଡ଼ୁଛି ।୪।

—※—

## ଆବାହନ

୧୦—( କରୂପ ଦେଖିବୁ ସଧ୍ୟ ମୂରତି—ବୃନ୍ଦେ )
ଆସ ହେ ଗୌରାଙ୍ଗ ଯେନ ସଙ୍ଗୋପାଙ୍ଗ ହୃଦୟର ସିଂହାସନେ
ଯେନ ଜନମନ୍ତ୍ରୀ ହେ ପତିତପାବନ ଏହି ହରି ସଙ୍କୀର୍ତ୍ତନେ !
ଆସ ଗୌରଚନ୍ଦ୍ର, ଆସ ନିମାଇଁ, ଆସ ଆସ ପ୍ରେମଦାତା ନିତାଇ ।୧।
ଦେଇ ଗନ୍ଧପୁଷ୍ପ, ଧୂପ ଦୀପ ଆଦି ନୈବେଦ୍ୟ ସୁବାସ ନୀର ।
ତାକୁଛୁଁ କାତରେ, ଦେଖା ଦିଅ ଥରେ, ଦୟାମୟ ଚକ୍ରଧର ।୨।
ତୁମ୍ଭେ ନ ଆସିଲେ ଶୋଭିବ କି ଭଲେ, ନାମ ଯଜ୍ଞ ହେଉଥିଲ ।
ଅଗତିର ଗତି କରୁଣା ନିଧାନ ହେ ଗୌର ଶଚୀ ଦୁଲାଳ । ୩ ।
ଶରଣ ରକ୍ଷଣ ଦୀନଜନ ବନ୍ଧୁ ବିଷ୍ଣୁପ୍ରିୟା କଣ୍ଠମଣି ।
ଶୀଘ୍ରେ ଆଗମନ କର ହେ ବନ୍ଦନ ବଇଷ୍ଣବ ଦାସ ଭଣି ।୪।

—※—

## ରୂପାନୁରାଗ

୧୮—( କୁଞ୍ଜ ବନରେ କାଳିଆ ନଦେଇତା—ବୃନ୍ଦେ )
ଦେଖିବ ଯଦି ଆସ ଗୋ କନକ-ଗୋରାକୁ ।
ନଦିଆବାସୀମାନଙ୍କ ଚିତ୍ତ-ସମ୍ପତ୍ତି ଚୋରାକୁ । ଘୋଷା ।
ସୁବାଦେଶେ ଝୁଲ ଝୁଲ, ପ୍ରେମାନନ୍ଦେ ଫୁଲ ଫଲ
ନାଚି ଆସେ କି ରଙ୍ଗରେ ବାଣ୍ଟି ନାମ ପସରାକୁ ।୧।

ହରି ବୋଲି ବୋଲି ମୁଖେ, ନିତ୍ୟାନନ୍ଦ ବାମପାଖେ
କି ଶୋଭା ପାଉଛନ୍ତି ଅହା ମଣ୍ଡି ଶ୍ରୀକ୍ଷେତ୍ର ଧରାକୁ ।୨।
ପାତ୍ରାପାତ୍ର ନ ବିଚାରି, ଆଚଣ୍ଡାଳେ କୋଳକରି,
ପଳାଇଛନ୍ତି ମତ୍ତଗଜ ଗମନେ ଶ୍ରୀ ଗମ୍ଭୀରାକୁ । ୩ ।
ଚରଣପାଶେ ପଣ ପଣ, ଚନ୍ଦ୍ର କୋଟିନଥିଁ ଗଣ,
ମୁଣ୍ଡମାଳ ଛନ୍ଦେ ପଡ଼େ ନ ମାନି ଶିରା ଉରକୁ ।୪।
ସ୍ୱ ସ୍ୱ ବୋଲି ଅଶ୍ରୁନେତ୍ରେ, ଗଡ଼ି ପଡ଼ି ଅବନୀରେ,
ଧା ଧା ବୋଲି ଧାଏଁ ପୁଣି ଯାଇ ତା ପାଳିଧରାକୁ ।୫।
କେତେବେଳେ କି ହେଉଛନ୍ତି, ତା ଭାବ କେବା ଜାଣୁଛନ୍ତି;
ଭଜେ ବଇଷ୍ଣବ ମୂର୍ତ୍ତି ନୋହେ ସେ ଧର୍ମହରାକୁ ।୬।

—*—

## ଗୌରାଙ୍ଗ ଆରତି

୧୫—( ଜୟରେ ଜୟରେ ଗୋରା ଶ୍ରୀଶଚୀନନ୍ଦନ—ବୃଷେ )

ଜୟ ଜୟ ଶ୍ରୀ ଗୌରାଙ୍ଗ ଆରତି ଶୋଭନ ।
ଗଙ୍ଗାତୀରେ ରଚାଇ ଶଚୀର ନନ୍ଦନ ହେ ।୧।
ବସିଛନ୍ତି ମହାପ୍ରଭୁ ରତ୍ନ-ସିଂହାସନେ ।
ଦକ୍ଷିଣେ ଶ୍ରୀ ନିତ୍ୟାନନ୍ଦ ଗଦାଧର ବାମେ ହେ ।୨।
ନିକଟେ ଅଦ୍ୱୈତ ଚନ୍ଦ୍ର ଅଗ୍ରନ୍ଥି ଠାକୁର ।
ଛତ୍ରଧାରୀ ତହିଁ ଶ୍ରୀନିବାସ ଭକ୍ତ ବର ହେ ।୩।
ନରହରି ଆଦିକରି କେତେ ଭକ୍ତ ବୃନ୍ଦ ।
ଚାମର ଢାଳନ୍ତି ପାଶେ ହୋଇଣ ଆନନ୍ଦ ହେ ।୪।
ସଞ୍ଜୟ ମୁକୁନ୍ଦ ଦତ୍ତ ବାସୁଦେବ ଘୋଷ ।
ଗାଉଛନ୍ତି ଗୋରା ଗୁଣ ହୋଇଣ ଉଲ୍ଲାସ ହେ ।୫।

ମଧୁର ମଧୁର ବାଜେ ମୃଦଙ୍ଗ ମନ୍ଦିରା ।
ଝାଞ୍ଜ ଘଣ୍ଟା କରତାଳ ସଙ୍ଗେ ବେଣୁ ତୁରୀ ହେ । ୬ ।
କୋଟିଚନ୍ଦ୍ର ଜିଣି ଗୌର ଶ୍ରୀମୁଖ ମଣ୍ଡଳ ।
ଅଜାନୁ ଲମ୍ବିତ ଶୋଭେ ଗଳେ ବନମାଳ ହେ । ୭ ।
ହର ବ୍ରହ୍ମା ଶୁକଦେବ ନାରଦ ସନ୍ଧ୍ୟାନ୍ତ ।
ଦର୍ଶନ କରନ୍ତି ପ୍ରେମ ଗଦ ଗଦ ଚିତ୍ତେ ହେ । ୮ ।
ଏହି ଭାବେ ଗୌରଚନ୍ଦ୍ର ପାଦେ କରି ଆଶ ।
ଦେଖଇ ଆରତି ଶୋଭା ବଇଷ୍ଣବ ଦାସ ହେ । ୯ ।

—୦—

## ଆରତି ଦର୍ଶନ

୧୨—( ପ୍ରାଣ ସଜନୀ ଗୋ ଯାହା ମୁଁ ଦେଖିଲି ଅଜ— ବୃନ୍ଦେ )
କେତେ ଆନନ୍ଦରେ ଶ୍ରୀ ଗୌର ଚନ୍ଦ୍ର ଆରତି ।
ବାଜେ ଖୋଲତାଳ ମନ୍ଦିରା ମର୍ଦ୍ଦଳ ଉଚ୍ଛୁଳି ପଡ଼େ ଧରଣୀ । ଘୋଷା ।
ସବୁର ବଦନେ ଜୟ ଜୟ ପଦ ଆହା କ ଅପୂର୍ବ ଗୀତ ।
ଶୁଭ ଝାଞ୍ଜଧ୍ୱନ ଶୁଭଇ ଘନ ଘନ ଘଣ୍ଟା ନାଦ ନାନା ଜାତ । ୧ ।
ଗାନେ ତାନେ ମାନେ ଭକ୍ତଜନମାନେ କ ଜଣାଦେଉଛନ୍ତି ମାତି ।
ଦାଣ୍ଡ ଦାଣ୍ଡ ହୋଇ କ ଶୋଭା ଦିଶଇ ଶ୍ରୀଗୌରଙ୍କ ମୁଖ ଜ୍ୟୋତି । ୨ ।
ଏହି ଗୋରା ଆମ୍ଭ ନୟନ-ସଙ୍ଗୀନ ଏହି ଆମ୍ଭ ବନ୍ଧୁ ଜ୍ଞାତି ।
ଜୀବନସ୍ତାବକ ବ୍ରହ୍ମାଣ୍ଡ ନାୟକ ଗୌରସୁତ ସୁନା ହାତୀ । ୩ ।
ନବାରନ୍ତି ଗୌର ପାଦ କ ଅପାର୍ତ୍ତ ଜାତି କ ଅବା ଅଜାତି ।
ତାଙ୍କର ବଦନ ଶ୍ରବଣେ ନୋଦନ-ନାଶନ୍ତି ପାପ ଅଜ୍ଞାତି । ୪ ।
ଦେଖୁଥିବା ଜାତ ଏ ଗୌର ମୂରତି ମିଳାଇ ଗ୍ରନ୍ଥକ ଗ୍ରନ୍ଥ ।
କହେଁ ଦୀନ ହୀନ ବଇଷ୍ଣବ ଦାସ ଆଜ୍ଞା ପାଇଁ ଭରସ ତ । ୫ ।
( କେତେ ଆନନ୍ଦରେ ଶ୍ରୀ ଗୌରଚନ୍ଦ୍ର ଆରତି )

—*—

## ପୂର୍ବରାଗ

୧୭—( ଅପ୍ରାକୃତ ପ୍ରେମମୂର୍ତ୍ତି ଜୟୁରାଧା ଭାବ – ବୃତ୍ତେ )

ଗୌରାଙ୍ଗ ରୂପକି ମୋର ହଦା ପଡ଼େ ମନେ ।
କାହା ନାଣୀ କାହା ଦାଶି ଶୟନେ ସ୍ୱପନେ ଗୋ । ୧ ।
ସେହୁ ମୃଦୁହାସ ତାର ନେତ୍ର ଚାହାଁଣି ।
ଘୁଞ୍ଚୁ ଯାଉ ନାହିଁ କ୍ଷଣେ ପରାଣ-ମିତଣୀ ଗୋ । ୨ ।
ପଶସର ହୃଦୟରେ ଲେପିତ ଚନ୍ଦନ ।
ମୃଗମଦ ଚତୁଃସମ କୁଙ୍କୁମର ଗନ୍ଧ ଗୋ । ୩ ।
ଗୌରଚନ୍ଦ୍ର ବଦନ ମଣ୍ଡଳ ପଦ୍ମପାନ୍ତି ।
ତହିଁକି ବେଢ଼େ ଘଟଣ ସେ ଚନ୍ଦନ ପାନ୍ତି ଗୋ । ୪ ।
ଦେଖିଲ ମାତ୍ରକେ ସଖି ! ଗୌରାଙ୍ଗ ଛବିକି ।
ଚେତଣ ଗୃଅଂସ୍ୱ ତାରେ ନ ହୋଇବ ଛକି ଗୋ । ୫ ।
ଏତେକ କର କହୁଛୁ ଅଗୋ ପ୍ରାଣସହୁ ।
ଗୋରାର ନ ହୋଇ ଦାସୀ କେ ପାରିବ ରହୁ ଗୋ ।୬।
ପତିବ୍ରତା ଶିରୋମଣି ହୋଇଥିବ ଯେବା ।
ପ୍ରାଣନାଥ ଗୋରା ବୋଲି ନ କହିବ କେବା ଗୋ । ୭।
ଗୌର ଦର୍ଶନେ ବହିବ ବା ନାଭ ମୃଦାଂସ ।
ମିଛ ନୁହେ ଏହା କହେ ବଇଷ୍ଣବ ଦାସ ଗୋ ।୮ ।

—ঃ—

## ପୂର୍ବାନୁରାଗ

୧୮— ( ଉପତ ଭାଞ୍ଜନ—ଚାନ୍ଦ୍ରବଦନେବ୍ରତ୍—ବୃତ୍ତେ )

ନଦୀୟା ନାଗର, ଗୌର-ସୁଧାକର
ଭୁବନ ମୋହନ ବେଶ ।
ରସାଣ-ଭାଞ୍ଜନ, ଜନେ ଅସଧନ,
ଅତି ଅପୂର୍ବ ମାଧୁରୀ । ୧ ।

ପୀତାମ୍ବର ପାଟ, ଦଶେ ଝଟ ଝଟ,
ସବୁଆ କଟି ଉପରେ ।
ନାନା ଫୁଲହାର, ଗଳେ ମନୋହର,
ବଳୟ କଙ୍କଣ କରେ । ୨ ।
କପାଳେ ଚନ୍ଦନ, ତିଳକ ଶୋଭନ,
କଣ୍ଠେ ତୁଳସୀର ମାଳ ।
କେଶେ ଫୁଲ ଗନ୍ଧ, ଜନ ମନ ଲୁବ୍ଧ,
ନାଚ ଅସେ ଟଳ ଟଳ । ୩ ।
ଚରଣେ ନୂପୁର, ବାଜେଣୀ ଘୁଙ୍ଗୁର,
ରୁଣୁ ଝୁଣୁ ସ୍ୱନ କରେ ।
ବୈଷ୍ଣବ ଚରଣ, ଦାସ ମନ ପ୍ରାଣ,
ସମର୍ପି ଦେଇଛି ତାରେ ଗୋ । ୪ ।



## ଗୋରା-କଲେଜ

୧୯—( ଅସୁ ବେ ଯାଦବରେ ଅସୁ—ବୃନ୍ଦେ )

ଅସ ବେ ଅସରେ ଭାଇ !
ଗୋରା କଲେଜରେ ପଢ଼ିବ ପାଠ ।
ତାଳି ତା ଥେଇ ଥେଇ ମୃଦଙ୍ଗ ବଜାଇ
ପାଠ ସଙ୍ଗେ ସଙ୍ଗେ ଶିଖିବ ନାଟ । ଘୋଷା ।
ସ୍କୁଲଟି ନଦୀୟାପୁରେ, ଶ୍ରୀବାସଙ୍କ ଅଗଣାଠାରେ,
ପ୍ରଫେସର ନିତାଇ ବାବୁଟି ଧରନ୍ତି ହାତେ ପ୍ରେମର ଗ୍ରନ୍ଥ ।୧।
ତହିଁ ଗଦାଧର ପଣ୍ଡିତ, ବ୍ୟାଖ୍ୟାକରି ବୁଝାଇବେତ,
ଅଦ୍ୱୈତ ଆଚାର୍ଯ୍ୟ ବୁଢ଼ା ପ୍ରଫେସର ଦେଖାଇ ଦେବେରେ ଭକତିବାଟ ।
ସରକାର ଶ୍ରୀ ନରହର, ବାସୁ ଘୋଷ ଚନ୍ଦ୍ର ଆଦର,
ସଞ୍ଜୟ ଶ୍ରୀ ମୁକୁନ୍ଦ ଦତ୍ତ ଗୌରିଦାସ ନେବେ ପ୍ରଣାମ ଭେଟ । ୩ ।

ବକ୍ରେଶ୍ୱର ଜଙ୍ଗମ ଗୁରୁ ସ୍ୱେଚ୍ଛ କରି ଜାଦକନ୍ତି ହୁରୁ,
ଶବ୍ଦ ନଭେ ନଭ ଶ୍ରୁତିଗଣ ଖଞ୍ଜନ୍ତିକୋଳ ଦୂଷଣଙ୍କୁ ପଞ୍ଚାରିବ୍ୟାଁ ।
ଶିକ୍ଷା ଦାନେ ନ ଥାଏ ହେଳା, ଲାଗିଅଛନ୍ତି ସର୍ବଦା ମେଳା,
ଖୋଲ ରହିଅଛି ସକଳ ଦୁଆର ରୁଣ୍ଡ ହୋଇଲେଣି ଅନେକ ଗୃହ ॥
ଅତି ମୂର୍ଖ ବୈଷ୍ଣବଦାସ, କରିନାହିଁ ବିଦ୍ୟା ଅଭ୍ୟାସ,
ଶ୍ରୀଗୁରୁ ଗୋବିନ୍ଦ ଦୟା କରି ସତେ ଦେବେକ ଶର୍ଣ୍ଡିଏ ସାର୍ଥିଫିକେଟ ।

—※—

# ସୁରଧୁନୀ ତୀରେ ଗୋରା

୨୦—(ହରି ହରି, କବେ ହବେ ବୃନ୍ଦାବନ ବାସୀ—ବୃନ୍ଦେ)

(ଆଜ) କି ଦେଖିଲି ସଜନି ଗୋ ସୁରଧୁନୀ ତୀରେ ।
ନଦୀୟାନାଗର ଗୋରା କି ରଙ୍ଗେ ବିହରେ ଗୋ ।୧।
(ତାର) ଗଳାରେ ମାଳତୀ ମାଳା ଜାନୁ ପରିଯନ୍ତେ ।
ପିନ୍ଧିଅଛି ପୀତାମ୍ବର ପାଟ କଚ୍ଛା ମାଥେ ଗୋ । ୨ ।
(ଦେଖ) କର୍ଣ୍ଣେ ଝଲମଲ ଦିଶେ ରତନ କୁଣ୍ଡଳ ।
କଣ୍ଠେ ତିନସରିଆ ତୁଳସୀ କୁନ୍ଦ ମାଳ ଗୋ । ୩ ।
(ପୁଣି) ଦ୍ୱାଦଶ ଅଙ୍ଗରେ ଶୋଭେ ଦ୍ୱାଦଶ ତିଳକ ।
ଚନ୍ଦନ ଚର୍ଚ୍ଚିତ ବାହୁ ସୁନ୍ଦର ଅଳକ ଗୋ । ୪ ।
(ତାର) ନାସେ ମୃଦ ମନ୍ଦ କଲି ଚନ୍ଦନର ପାନ୍ତି ।
ଇନ୍ଦ୍ରାଦି ଗଣ୍ଡ ସରିକ ଦେଖେ ପରିପାଟି ଗୋ । ୫ ।
(ଆହା) ଶ୍ରୀକରେ ଳଲବ୍ଧ ବାହୁ ଅତି ମନୋହର ।
ଚରଣେ ବ କେଣୀ ବଳା ସୁନାର ନୂପୁର ଗୋ । ୬ ।
(ସେତ) ନବୀନ କିଶୋର ଛବି ନଟବର ବର ।
ନବଘନ ଜିଣି କେଶ ଲେଟ ପଟପର ଗୋ । ୭ ।

( ଗୃଷ୍ଟ ) ଅଧର ରଙ୍ଗିମା ଜିଣି ବନ୍ଧୁଲୀ ସୁମନ ।
ତହିଁକି ମଧୁର ହାସ ଭୁବନ ମୋହନ ଗୋ । ୮ ।
(ସେତ) ପ୍ରିୟପରିକର ଗଣ ଘେନି ଭ୍ରମୁଥିଲା ।
ବଇଷ୍ଣବ ଦାସ ନେନେ ସଙ୍ଗନା ନାଚିଲା ଗୋ । ୯ ।

—o—

## ରାଧାଭାବେ ଗୌର

୨୧—(ଭାଙ୍କୁ ଭଟ୍ଟେ ସାଈ ଭକୁଟେ ଡରଇ—ବୃନ୍ଦେ )

ଜଗଜ୍ଜନ ବନ୍ଧୁ, ଗୌର ଦୟାସିନ୍ଧୁ,
ଦୁଃଖୀ ଦରିଦ୍ରଙ୍କ ପ୍ରାଣ ।
ରାଧା ଭାବେ ଅଙ୍ଗ, ଭାଦ ଭଦାଜନ୍ତି,
ଯା ନାମ ପତିତ ତ୍ରାଣ ।
ଥନ ଥନ ନେତ୍ରୁ ଲୋତକ ଝରେ ।
( ହେଣୁ ) ରାଧା ପ୍ରେମ ରୁଣୀ ସେ ନିରନ୍ତରେ । ୧ ।
ଦର୍ଶଣ ଅଳୁକେ, ଗଡ଼େ ପୁଣି ତଳେ,
ହା ହା ପ୍ରାଣେଶ୍ୱରୀ ବୋଲି ।
ପୁଲକ ବୈବର୍ଣ୍ଣ, ଆଦି ଚିହ୍ନମାନ
ସର୍ବାଙ୍ଗେ ଯାଇଛି ଖେଳି ।
ରାଧା ଭ୍ରାନ୍ତି ଧରି ହୋଉଛନ୍ତି ଜାତ ।
( ତ.ର ) ତନ ଅଭିଳାଷ ପୂରି ନାହିଁତ । ୨ ।
ପ୍ରତିଜ୍ଞା କରିଛି, ନିକୁଞ୍ଜ ବିଳାସେ;
କଳିରେ ଗୌରାଙ୍ଗ ହେବି ।
ରାଧା ନାମ ତୁଣ୍ଡେ, ଗାଇ ଏ ବ୍ରହ୍ମାଣ୍ଡେ,
ପ୍ରେମ ବାଦ୍ୟ ବଜାଇବି ।
( ନିଷ୍ଠେ ) ଦ୍ୱାରେ ଦ୍ୱାରେ ବୁଲି ମାଗିବି ଭିକ୍ଷା ।
( ଗୁପ୍ତେ ) ରାଧା ମନ୍ତ୍ର ଗୋଟି କରିବି ଦୀକ୍ଷା । ୩ ।

ନଦୀୟା ହୋଇବ,                    ଗୋପ ବୃନ୍ଦାବନ,
ଗଙ୍ଗା ହୋଇବ ଯମୁନା ।
ସଖୀ ସଖା ଯେତେ,                    ଥିବେ ମୋ ସଙ୍ଗତେ,
ଜଡ଼ ଇତ ସ୍ତ୍ରୀତ ତାନା ।
କଟାକ୍ଷ ସ୍ତବରେ କଣୋର ଗୋରା ।
(ଦୁଃଖୀ) ବୈଷ୍ଣବ ଦାସର ଦୁଃଖ ପାଶୋରା ।୪।

———

## ରୂପାନୁରାଗ

୨୨—(ବଂଶୀ ଭଏ ବଜାଇଛ ଗୋ ମନ ମୋହୁଛି—ବୃନ୍ଦେ)
ଗୋରା କ ମନ୍ଦ କାହିଁ ଗୋ; ପରାଣ ସହୁ ।
କଟାକ୍ଷ ନୟନେ ଚାହିଁ ମନ ମୋହଇ ଗୋ । ଘୋଷା ।
ପ୍ରିୟ ଗଦାଧର ସଙ୍ଗେ, ନାଚ ଅସେ ନବରଙ୍ଗେ ।
ପୀତାମ୍ବର ପାଟ ଅଙ୍ଗେ ଶୋଭା ବଶଇ ଗୋ ।୧।
ଏହୁପର ଗୋ ମିଛଣି, ବୃନ୍ଦାବନ ଚନ୍ଦ୍ରାମଣି ।
ନାଚୁଅ ହିଭଙ୍ଗି ପାଣି, ନଦ ଟାଣାଇ ଗୋ ।୨।
ଗୋପୀଙ୍କର ଚତ୍ତରୈରା, ଯଶୋଦା ନେତ୍ର ପସରା ।
ଏବେ ନଦୀୟାରେ ପରା, ନାମ ନମାଇଁ ଗୋ ।୩।
ବଇଷ୍ଣବ ଦାସ ଭଣେ, ରହୁବାକୁ ତା ଗହଣେ ।
ମନ ହୁଏ ଅନୁକ୍ଷଣେ, ଭରସେ ନାହିଁ ଗୋ ।୪।

———

## ଗୌରାଙ୍ଗଙ୍କ ନାମ ଶତକ

୨୩—(ଜୟ ଜୟ ଗୋବିନ୍ଦ ଗୋପାଳ ଗଦାଧର—ବୃନ୍ଦେ)
ମିଶ୍ର ଜଗନ୍ନାଥ ସୁତ ଗୌରାଙ୍ଗ-ସୁନ୍ଦର ।
ଶଚୀ ନନ୍ଦନ                    ମହାପ୍ରଭୁ ବିଶ୍ୱମ୍ଭର ।୧।

ଗୌର ମଣି ଗୌର ହରି ନିମାଇଁ ସୁନ୍ଦର ।

ନଦୀୟା ବିହାରୀ ଗୋରା ନବ ନଟବର ।୨।

ଭକ୍ତବର ଶ୍ରୀବାସ ଅଗଣା ନୃତ୍ୟକାର ।

ନବ ହୃଦୟିଆ ନବଦ୍ୱୀପ ସୁଧାକର ।୩।

ରାଧା ପ୍ରେମ-ପାଗଳା ଗୋପିନୀ ଚିତ୍ତଚୋର ।

ନାମାନନ୍ଦ ଶ୍ରୀଚୈତନ୍ୟ ଗୁରୁଙ୍କ ପ୍ରବର ।୪।

ବିଶ୍ୱ ବିମୋହନ ମାତୃଭକ୍ତ ଗୁଣାକର ।

ବିଶ୍ୱବିଜୟୀ ଦର୍ପହାରୀ ବ୍ରହ୍ମାଣ୍ଡ ଠାକୁର ।୫।

ଶ୍ରୀଲକ୍ଷ୍ମୀ ବଲ୍ଲଭ ବିଷ୍ଣୁପ୍ରିୟା ପ୍ରାଣେଶ୍ୱର ।

ତ୍ରୈଲୋକ୍ୟ ଚିନ୍ତାମଣି ପାପ ତାପ ହର ।୬।

ଅଦ୍ୱୈତ-ବାନ୍ଧବ, ଗଦାଧର ଗଳାହାର ।

ନିତ୍ୟାନନ୍ଦ ପ୍ରାଣ ଶ୍ରୀନିବାସ ପ୍ରେମାଧାର ।୭।

ଜଗାଇ ମାଧାଇ ଗର୍ବ ଟୈଳ ଖର୍ବକର ।

ଉଦ୍ଦଣ୍ଡ ନର୍ତ୍ତକ ଶ୍ରୀ କରୁଣା ଅବତାର ।୮।

ଭକ୍ତ ଚାତକ ତୋଷକ ନବ ଜଳଧର ।

ଦୀନ ବଇଷ୍ଣବ ଦାଶ ଶରଣ-ସୋଦର ।୯।

---

## ପୂର୍ବରାଗ

୧୪-(ଦେଖ ଗୋ ସଙ୍ଗାତ ବ୍ରଜରାଜସୁତ ଅକଳ ବିଚଳ ବେଶ-ଭୂଷେ)

ଚିତ୍ତଚୋର ଗୋରା ଶ୍ରୀଅଙ୍ଗ ମାଧୁରୀ

ଦେଖିଲି ନୟନେ ଆଜ ଗୋ ।

ସେ ନବ ରଙ୍ଗିଆ ଭକତ ସଙ୍ଗିଆ

ଦୂହାଇ ଦେଲେ ମୋ ଲାଜ ଗୋ ।

ସୁରଧୁନୀ ତଟେ ତଟେ,

ନାଚ ଆସୁଥିଲେ ଧୀରେ ଧୀରେ ଗୋ ।

ସୁନ୍ଦର ସେ ନନ୍ଦ- ନନ୍ଦନ ଭାଗ୍ୟଙ୍କ
ମନ୍ଦହାସେ କେଡ଼େ ଶୋଭା ଗୋ ।
ରଚି ରଚି ଗୀତ ଗାଉଥିଲେ ମିତ
ଶଚୀଙ୍କ ଦୁଃଖ ପାଶୋରା ଗୋ ।
ସାତ ପଣ୍ଡୁ ଉତ୍ତମ ।
ଯାତ ଦେଉଥିଲେ ନାମ ଧନ ଗୋ ।୨।
ଅଗତିଙ୍କ ଗତି ପତି ଶିରୋମଣି
ପତିତ-କୁମୁଦ-ବନ୍ଧୁ ଗୋ ।
ହୃଦୟ ମନ୍ଦର ଅନ୍ଧାର ହାରକ
ରସମୟ ରସ ସିନ୍ଧୁ ଗୋ ।
ନଣ୍ଡ ଭଗ୍ନବର ଗତି ।
ଅଙ୍ଗେ ଦୃଷ୍ଟେ ପୁଲକ ପନ୍ତ ଗୋ ।୩।
ତେବେ ଆପଣା ପର ନ କରି ବିଚାର
କରୁଥିଲେ ଆଲିଙ୍ଗନ ଗୋ ।
ପ୍ରେମାମୃତ ରସ ଦୋଇଣ ହରଷ
ବର୍ଷୁଥିଲେ ଘନ ଘନ ଗୋ ।
ପଡ଼େ ପାହିଁ ପାଦତଳ ।
ଥିଲେ ପଥର ଯାଏ ତରଳି ଗୋ ।୪।
ସହଜେ ସେ ଧୀର ଲଳିତ ବିଗ୍ରହ
ମଧୁର ବାଙ୍କ ଗୃହିଣୀ ଗୋ ।
କୁନ୍ଦନ କନକ କାନ୍ତି ଜକ ଜକ
ନିତାଇଙ୍କ ଲାବଣ୍ୟ ଠାଣି ଗୋ ।
ଦେଖି ଦୁଃଖ ହେଲ ନାହିଁ ।
ଏକା ବଞ୍ଚିତ ବୈଷ୍ଣବ ଦାସ ଗୋ ।୫।

—*—

## ଆଶା ଭରସା

୨୫—(କବେ ବ୍ରଜଧାମେ ଅସି—ବୃତ୍ତେ)

କେବେ ଶ୍ରୀ ଗୌରାଙ୍ଗ ପଦେ ହେବି ନବ ଦାସୀ ?
କେବେ ସେବା ଯାଚି ଦେବେ ସେ ନଦୀୟା ବାସୀ ? ।୧।
କେବେ ସାଧୁଜନଙ୍କର ହୋଇବ କରୁଣା ? ।
କେବେ ଶ୍ରୀଗୁରୁ ଗୋବିନ୍ଦ ହେବେ ହୃଷ୍ଟମନା ? ।୨।
କେବେ ମୁଁ ଲଗି ପଣ୍ଡିତ ପରିଚର୍ଯ୍ୟା କାର୍ଯ୍ୟେ ? ।
କେବେ ନେତ୍ରେ ନିରେଖିବି ଗୌରନଟ-ରଙ୍ଗେ ? ।୩।
କେବେ ଏ ଦୁର୍ଦ୍ଦଶା ଦୂରି ହୋଇବ ସୁଦଶା ? ।
ଦୁଃଖୀ ବୈଷ୍ଣବ ଦାସର ଏ ଆଶା ଭରସା ।୪।

---

## ଗୌରାଙ୍ଗ-ରୂପ

୨୬—(ମାଲ ମାଲ ହୋଇ ତମାଲ ମାଳ—ବୃତ୍ତେ)

ଅହା କି ସୁନ୍ଦର ନଦୀୟା ଚାନ୍ଦ ।
ନାଗରୀ ମାନସ ମୋହନ-ଫାନ୍ଦ । ଘୋଷା ।
ନବୀନ କିଶୋର ରୂପ ମନୋହର
ଶ୍ରୀ ଗୌରାଙ୍ଗ ନଟବର ।
ଲାବଣ୍ୟ ସାଗର, ଭକ୍ତ ଜନ ପ୍ରିୟ,
ନବଦ୍ୱୀପ-ଲୀଳାକର ।୧।
ଶ୍ରୀ ଶଚୀ ନନ୍ଦନ, ଜଗତ ବନ୍ଦନ;
ପ୍ରେମାନନ୍ଦମୟ ହର ।
ମନ୍ଦ ମନ୍ଦ ହାସ, ଶ୍ରୀମୁଖେ ପ୍ରକାଶ,
ବଚନ ସୁଧା-ମାଧୁରୀ ।୨।

ହରେ କୃଷ୍ଣ ନାମ, ଅଛି ସୁଖ ଧାମ,
ଗାୟନେ ସର୍ବଦା ଗୋରା ।
ଦେବଙ୍କ ଦେବତା, ଅଖିଳିନ ପିତା,
ଶ୍ରୀ ବ୍ରଜରସ-ପାଗଳା । ୩ ।
ସ୍ୱୟଂ ରାଇ କାହ୍ନୁ ଦୁହେଁ ଏକ ତନୁ;
ମାଧୁର୍ଯ୍ୟ ମୂରତି ଗୋରା ।
ଅଧମ ଉଦାସ, ଦୀନ ହୀନ ଦାସ—
ବୈଷ୍ଣବ ଦୁଃଖ ପାସୋରା ।୪।



## ରୂପାନୁରାଗ

୨୭—(ରୁଚି ମୁଁ ବସିଲି ଗେଲେ ରେ ସଙ୍ଗାତ-ବୃନ୍ଦେ)

ରସିକା ରମଣୀ କେବା ଗୋ, ସହୁ ! ରସିକା, ରମଣୀ କେବା ?
ମଦନମୋହନ, ଗଉର ବଦନ, ଦେଖି ଧୈର୍ଯ୍ୟଧରେ ଯେବା ।ଘୋଷା।
ଯେଉଁ ନାରୀ ପତିବ୍ରତା ଗୋ, ସହୁ ! ଯେଉଁ ନାରୀ ପତିବ୍ରତା ।
ଶ୍ରୀ ଗୌରାଙ୍ଗ ଠାଣି, ବଙ୍କିମ ଚାହାଁଣି, ଦେଖି ରଖିବକି ଚେତା ।୧।
ଯେବା ନ ଜାଣେ ପ୍ରୀତି ରୀତି ଗୋ, ସହୁ ! ଯେବା ଜାଣେ ପ୍ରୀତିରୀତି ।
ଗୋରା ରୂପ ଦେଖି ଭୁଲି ନ ଯିବକି, କେତେ ଦମ୍ଭ ତାର ଛାତି ? ।୨।
ଯେ ଜାଣେ ରସର ସୁଖ ଗୋ, ସହୁ ! ସେ ଜାଣେ ରସର ସୁଖ ।
ଗୌରଚନ୍ଦ୍ର ଶ୍ରୀମୁଖ ସୁଧା ନ ଚାଖିଲେ ମରଣୁ ବଳି ତା ଦୁଃଖ ।୩।
ଗୋରା ବାହୁ ଆଲିଙ୍ଗନ ଗୋ, ସହୁ ! ପାଇଛି ଯେ ସେହୁ ଧନ୍ୟ ।
ଗୌରାଙ୍ଗ ଶ୍ରୀକର ପଲ୍ଲବ ପରଶେ ତା ଅଙ୍ଗ ଲୋଡ଼େ କାହିଁନ ।୪।
ଗୌର ପାଦପଦ୍ମ ଧୂଳି ଗୋ, ସହୁ ! ହୋଇଛି ଯେ ଶିରେ ବୋଳା ।
ତା ପରି ଯୁବତୀ ନ ଥିବେ ଏ କ୍ଷିତି ମଧ୍ୟେ ଜାଣ ପ୍ରାଣ ଆଳି ।୫।

ଗୌର ଶ୍ରୀଅଙ୍ଗ ସୁବାସ ଗୋ, ସହୁ ! ଜଗନ୍ତରେ ଭରୁ ଅଛି ।
ନଦୀୟା ନଗରେ ଜନ୍ମ ଲଭିବାକୁ ଅଧମ ବୈଷ୍ଣବ ଦାସ ।୭।

—— —

## ଭକ୍ତ ନିମନ୍ତ୍ରଣ

୨। —(ବନ ଫୁଲହାରେ ବନ ବିହାରୀଙ୍କି ବନବେଶେ
ସାଜ ଦିଅ ଗୋ—ବୃନ୍ଦେ)

ହରି ସଂକୀର୍ତ୍ତନେ, ଆସ ଭାଇମାନେ, ଗାଇବା ମଧୁର ଗୀତ ହେ ।
ନଦୀୟା ବିହାରୀ, ପାପ ତାପ-ହାରୀ, ହରିବେ ସର୍ବ ଦୁରିତ ହେ ।
ବାଇ ଖୋଲ କରତାଳ ।
ଆସ ନାଚିବା ମିଳି ସକଳ ।୧।
ପ୍ରେମ ଅବତାର, ଗୌର ନଟବର, ପତିତ ପାବନ ମୂର୍ତ୍ତି ହେ ।
ଜଗତର ଗତି, ବିଷ୍ଣୁପ୍ରିୟା ପତି, ଦରିଦ୍ର ଜନ ସମ୍ପତ୍ତି ହେ ।
ଦୟାମୟ ଦୀନବନ୍ଧୁ ।
ନାମ ବହୁଛନ୍ତି କୃପାସିନ୍ଧୁ ହେ ।୨।
ସେ ଯେ ଭକ୍ତବଙ୍କା, ଛଡ଼ାଇବେ ଶଙ୍କା ଦେଖାଇବେ ଦିବ୍ୟପଥ ହେ
ଚୂର୍ଣ୍ଣ ହୋଇଯିବ, ପାତକ ପର୍ବତ, ପୂର୍ଣ୍ଣହେବ ମନୋରଥ ହେ ।
କର୍ଣ୍ଣାନନ୍ଦୀ ରସାୟନ ।
ବର୍ଣ୍ଣଭେଦ ନାହିଁ କର ପାନ ହେ ।୩।
ଗୌରାଙ୍ଗ ଚରିତ, ଅଟେ ଅଲୌକିକ, ପାଷାଣ ଦ୍ରବେ ଯା ଶୁଣି ହେ ।
ହୃଦୟ ସ୍ଥିର କି ସମ୍ଭାଳି ରହିବ ଝାଣ୍ଟେ ହୋଇଯିବ ପାଣି ହେ ।
କହେ ବୈଷ୍ଣବ ଦାସ ।
କଳିଯୁଗେ ସାର ନାମ ରସ ହେ ।୪।



## କଣାଣ

୨୯—( ଏ ରଜନୀ, ଶ୍ୟାମବନ୍ଧୁଙ୍କୁ ରଖିବ କେ ସଜନୀ—ବୃତ୍ତେ )

ହେ ଗୌରାଙ୍ଗ ! ଭଙ୍ଗ ନ ହେଉ ମୋହର ସାଧୁ ସଙ୍ଗ ! ଘୋଷା ।

ପରମାର୍ଥ ଗୋଷ୍ଠୀ ଥିବେ ଯହିଁ, ଶୁଦ୍ଧ ପ୍ରେମ ଭକ୍ତ ସବୁ ବହି
ସେହିଠାରେ ବସି ହରି କଥାମୃତ
ଆସ୍ୱାଦନେ ତୁଟୁ ଭବ ରୋଗ । ୧ ।

ସାତ୍ତ୍ୱିକ ଭାବରେ ମଜିବର, ନେତ୍ରୁ ବହୁଥାଉ ଅଶ୍ରୁଧାର,
ଅନ୍ୟଅଭିଳାଷ ଶୂନ୍ୟ ହୋଇ ସଦା
ଧାଉଥିବ ଲୀଳା ପରସଙ୍ଗ । ୨ ।

ବିଷୟୀମାନଙ୍କ ପାଶେ ଖଣେ, ନ ରହିବ ତୁଛ ଯିବ ଯେଣେ,
ଭଜନ ଆନନ୍ଦୀ ବୈଷ୍ଣବଙ୍କ ତୁଲେ
ପରବନ୍ଧ ହେଉ ଏ ଦାସ ଅଙ୍ଗ । ୩ ।

ଦାମ୍ଭିକ ନାସ୍ତିକ ଯେ ତାର୍କିକ, ନିନ୍ଦୁକ ପାଷଣ୍ଡୀ ମୂର୍ଖ ଲୋକ
ଦୁର୍ଜନ ଖଳ— ଦୁରାଚାରୀ ଯେ ଜନ୍ତୁ
ନୁହନ୍ତୁ ସେ ମୋର ଅନ୍ତରଙ୍ଗ । ୪ ।

ଦୁଃଖୀ ବଇଷ୍ଣବ ଦାସ ଭଣେ, ଏହି ଭିକ୍ଷା ମାଗେ ଶ୍ରୀଚରଣେ
ତୁମ୍ଭର ଚରିତ ଲେଖି ଲେଖି ଗୀତ
ଶ୍ରୀଧାମେ କରିବ ତନୁ ତ୍ୟାଗ । ୫ ।

---

## ଗୌର ନର୍ତ୍ତନ

୩୦—( ନବଘନ ଗୋରା ତନୁ—ବୃତ୍ତେ )

ଶ୍ରୀବାସ ବେଶେ ଗୌରଚନ୍ଦ୍ର, ନାଚନ୍ତି ହୋଇ ଆନନ୍ଦ,
କୀର୍ତ୍ତନ ମଣ୍ଡଳୀ ମଧ୍ୟେ ରହି ।

ସ୍ୱରୂପ ଯେ ଦାମୋଦର, ଗାଉନ୍ତି ଗୀତ ମଧୁର,
ତାନେ ମାନେ ରାଗିଣୀ ମିଶାଇ । ୧ ।

ରୂପ ସନାତନ ଦେଖି, ହେଉଛନ୍ତି ମହାସୁଖୀ,
ଗାନେ ମଧୁ ରାୟ ରାମାନନ୍ଦ ।
ବାସୁ ଘୋଷ ଯେ ଶଙ୍କର, ଗୋବିନ୍ଦ ଦାସ ଅବର;
ଗାନେ ରତ ଦତ୍ତ ଶ୍ରୀ ମୁକୁନ୍ଦ । ୨ ।
ମାଧବାନନ୍ଦ ସହିତେ, ପ୍ରିୟ ପରିକର ଯେତେ
ସବୁରି ମାନସ ପ୍ରେମେ ଭୋଳା ।
ପ୍ରଭୁଙ୍କ ଦକ୍ଷିଣ ପାଶେ, ରହି ନରହରି ଦାସ,
ନର୍ତ୍ତନ ବିଳାସେ କଲେ ଲୀଳା । ୩ ।
ବାମେ ପ୍ରିୟ ଗଦାଧର, ନାଚନ୍ତି ଅତି ମଧୁର,
ମନ୍ଦହାସ ବଦନେ ପ୍ରକାଶେ ।
ନୃତ୍ୟରଙ୍ଗେ ଗୌରହରି, ଦୁହିଁଙ୍କର କର ଧରି,
ଅଙ୍କେ ପଡ଼ନ୍ତି ଭାବାବେଶେ । ୪ ।
ନିତ୍ୟାନନ୍ଦ ମୁଖ ଚାହିଁ ହରେ କୃଷ୍ଣ କହି କହି,
ବୃନ୍ଦାବନ କରନ୍ତି ସ୍ମରଣ ।
ରାୟ ରାମାନନ୍ଦେ ଧରି, ଭାବେ ନବୀନ କିଶୋରୀ,
ପରାଣ କରନ୍ତି ଉଚାଟନ । ୫ ।
ଶ୍ରୀନିବାସ ହରି ଦାସ, ନର୍ତ୍ତନେ ହୋଇ ଉଲ୍ଲାସ,
ତୋଷନ୍ତି ବୈଷ୍ଣବ ଦାସ ମନ । ୬ ।

— ❀ —

## ଗୌରାଙ୍ଗ ଅଭିଷେକ

୩୧—( ପୁଲକେ ପୂରିଲ ତନୁ ନିଜଗୁଣ ଶୁଣି—ବୃତ୍ତେ )
ରତ୍ନ ସିଂହାସନେ ବସେ ଶ୍ରୀ ଶଚୀନନ୍ଦନ ।
ଶ୍ରୀବାସ ପଣ୍ଡିତ ଅଙ୍ଗେ ଲେପନ୍ତି ଚନ୍ଦନ ହେ । ୧ ।
ଗଦାଧର ଦେଲେ ଅଙ୍ଗେ ମାଳତୀର ମାଳ ।
ରୂପ ତେଜେ ଦଶଦିଗ ହୋଇଲ ଉଜ୍ଜ୍ୱଳ ହେ । ୨ ।

ନାନା ଉପହାରମାନ ଦିଅନ୍ତି ପକାଇ ।
ନିତ୍ୟାନନ୍ଦ ସଙ୍ଗେ ବସି କଲେକ ଭୋଜନ ହେ । ୩ ।
ତାମ୍ବୁଲ ଚର୍ବଣ ସାରି ବସିଲେ ଆସନେ ।
ମାଳତୀ ସହୃତେ ଶଚୀ ଆସିଲେ ତତ୍କ୍ଷଣେ ହେ । ୪ ।
ପଞ୍ଚଗାୟ ଲଗାଇଣ ବନ୍ଦାପନା କଲେ ।
ସୁବର୍ଣ୍ଣ ଭର ଶିରେ ଧାନ୍ୟ ଦୁବା ଦେଲେ । ୫ ।
ଭକ୍ତଗଣ କରନ୍ତି କୁସୁମ ବରଷଣ ।
ଅଦ୍ୱୈତ ଆଚାର୍ଯ୍ୟ ଦେଲେ ତୁଳସୀ ଚନ୍ଦନ ହେ ।୬।
ଦର୍ଶନେ ଆସିଲେ ଦେବ ମାନବ ସକଳେ ।
ଦକ୍ଷିଣ ପାଦୁକେ ନିତ୍ୟାନନ୍ଦ ବନ୍ଦନ କଲେ ହେ ।୭।
ଶ୍ରୀ ଗୌରାଙ୍ଗ ଅଭିଷେକ ଅପୂର୍ବ ବିଧାନ ।
ବଇଷ୍ଣବ ଦାସ ପଦେ ମାଗଇ ଶରଣ ହେ ।୮।



## ହରି ସଂକୀର୍ତ୍ତନ

୩୨—( କୃଷ୍ଣନାମ ଅଜାଡ଼ୁକୁ ମୋ ଶ୍ରବଣେ—ବୃନ୍ଦେ )

ହରି ସଙ୍କୀର୍ତ୍ତନେ, ଜଗନ୍ନାଥ ଗମନେ,
ପରିକର ସଙ୍ଗେ ଗୋରା ଗୋ ।
କରି ଧାଉ ଧାଉ, ପିଛ କରେ ନାଉ ।
ଭକ୍ତି ରୀତି ରଙ୍ଗ ପ୍ରେମ ଗୋ ।
ଦେଖି ନିତ୍ୟାନନ୍ଦ ହାତ ।
ଦରିଦଙ୍କ ସଙ୍ଗେ ସାମନ୍ତ ଗୋ । ୧ ।
ଥରି ଥରି ଅଙ୍ଗ— ସ ଲ୍ଲି କରେ ଭଙ୍ଗ,
ଲଭଇ କେତେ ଶ୍ରୀଅଙ୍ଗେ ଗୋ ।

ଝରି ଗଡ଼ଳ ଢାଳ, ତୁଳସୀର ଦ୍ୱାଳ,
ସରି ସରି ଯେ କରନ୍ତି ଗୋ ।
ଚନ୍ଦ୍ର ତା ଅଦ୍ଭୁତ ।
ହରିବାକୁ ଅଶେଷ ଦୁରିତ ଗୋ । ୧ ।
ଝରି କି ବଲ୍ଲଭ ଶୁଦ୍ଧ ପ୍ରେମ ଭା'ର
ଗନ୍ଧସ୍ତ ଦଶାକୁ ପାଏ ଗୋ ।
ଧରିତ୍ରୀର ଭାର, ହରିବାକୁ ଦୂର
ଚନ୍ଦ୍ର ବ୍ରଜର ଗାଏ ଗୋ ।
ପଡ଼େ ହରି ଶୁଦ୍ଧ ମୁଖ ।
ପରିପାଟି ତା ଚନ୍ଦନ ରେଖ ଗୋ । ୩ ।
ପରିଶୋଧ ଋଣ— ବାରେ ଭିନ୍ନ ଗୁଣ,
ପରିବ୍ରାଜକ ବେଶରେ ଗୋ ।
ପରବ୍ରହ୍ମ କରେ, ଧରି ଅଗ୍ରଣ୍ଡଳେ-
ଅନ୍ଧ୍ର ଧାରେ ଦେଶରେ ଗୋ ।
କହେ ସେ ପଦକୁ ଆଶ ।
ଛନ୍ଦିପିବ କି ବୈଷ୍ଣବ ଦାସ ଗୋ । ୪ ।

---

## ନଗର ଭ୍ରମଣ

ଗୀତ—( ରାଧ ଧର ସଖୀଙ୍କର—ବୃନ୍ଦେ )
ମୁଖେ ହରି ହରି ବୋଲି ।
ନଦୀଆ-ନଗରେ କେ ଯାଏ ଚଳି ଗୋ ।
( ଅହା ) ନାଚି ପ୍ରେମେ ଢୁଳି ଢୁଳି ସଜନି ଗୋ । ୧ ।
ଭାବ ଅବ ପାଖେ ଜଣେ ।
ଧାର ଧାର ଅଶ୍ରୁଜଳ ନୟନେ ଗୋ ।
( ସେତ ) ଚାରଣ କଣ୍ଠ ନ ମାନେ, ସଜନୀ ଗୋ । ୨ ।

ନାମ ନିତାଇ ନିମାଇ ।
କେଉଁ ଦେଶେ ଥିଲେ ଏ ଦୁଇ ଭାଇ ଗୋ ।
(ଏବେ) ନାଚନ୍ତି ମୃଦଙ୍ଗ ବାଇ, ସଜନୀ ଗୋ । ୩ ।
ଶ୍ରୀନାମ କୀର୍ତ୍ତନ-ଲୀଳା ।
ଏ ପାପ ନୟନ ଦେଖି ନ ଥିଲା ଗୋ ।
(କର୍ଣ୍ଣେ) ଶୁଣିଥ ପରବ ଖେଳ, ସଜନୀ ଗୋ । ୪ ।
ନଗର ଗୋଷ୍ଠିକ ଯାକ ।
ଭ୍ରମଣ କରନ୍ତି କି ରଙ୍ଗେ ଦେଖ ଗୋ ।
(ସଙ୍ଗେ) ଗୋଡ଼ାନ୍ତି ଅନେକ ଲୋକ, ସଜନୀ ଗୋ । ୫ ।
ଦୁଃଖୀ ବଇଷ୍ଣବ ଦାସ ।
ଗୌର ନିତ୍ୟାନନ୍ଦ ଦାସନୁ ଦାସ ଗୋ ।
(ସତେ) ଲଭିବକି ବ୍ରଜେ ବାସ, ସଜନୀ ଗୋ । ୬ ।



## ରାଧା ଭାବ ବେଶ ଗୋରା

୩୪-(କିଏ ସେ କେଳି କଦମ୍ବ ତରୁ ତଳେ ବଶୁଛି ଗୋ—ବୃନ୍ଦେ)

ଚାହାର କି ରଣ ଲଗି ଆହା ଗୋରା ଝୁରୁଛନ୍ତି ।
ଯାହାକୁ ତାହାକୁ ଧରି ଆଲିଙ୍ଗନ କରୁଛନ୍ତି ଗୋ । ଘୋଷା ।
କହୁଛନ୍ତି ବନଯ୍ୟୀହୋଇ, କାହିଁ ମୋ ବନ୍ଧୁ କି କାହିଁ ?
କେ ଦେଖିଛ କେଉଁଠାଇଁ, ବୋଲି ଅନୁସରୁଛନ୍ତି ଗୋ । ୧ ।
କମଳ ନୟନୁ ତାର, ବହୁଯାଏ ନୀର ଧାର ।
କଥା ଗଦଗଦ ସ୍ୱର, ପୁଲକରେ ଥରୁଛନ୍ତି ଗୋ । ୨ ।
କନକ କାନ୍ତି ଯାକ, ଗାମ୍ଭୂଲ ସର୍ବ ଦେଖ ।
କଳା ଶିରୀ ଗୋରା ଅଙ୍ଗେ କାହିଁକି ଚାହାନ୍ତି ଗୋ । ୩ ।

ଚନ୍ଦ୍ରଚରଣେ ଛନ୍ଦ, ହୋଇ ପୁଣି ମନ୍ଦାକିନୀ ।
କୁଞ୍ଜର ଗମନେ ଯନେ ଗୃହିଣୀ ଭାବେ ଠାବୁଛନ୍ତି ଗୋ ।୯।
ଜଳଦ ତେ ଗାର ଭ୍ରମ, ଜଦଉ ଦାସ ବୈଷ୍ଣବ ।
ଜଶୋଦା ଅବେଶେ ଠାବେ ଠାବେ ଜ୍ଞାନ ହାରୁଛନ୍ତି ଗୋ ।୧୦।



## ଶରଣାଗତ

୩୫—( ଅସ ଗୋ ସଙ୍ଗାତ ଅସ ପ୍ରାଣମିତ—ବୃନ୍ଦେ )

ଶରଣ ମମ୍ଭାଳ ପାତିର କ ନାହିଁ ଜଗନ୍ନାଥ ଠାକୁର ହେ ।
ଚରଣ ଜରନ୍ତି ତୁମ୍ଭଙ୍କୁ ମୁଁ ପରା କରଣକୁ ହୋଇ ଦୂର ହେ ।
ହରଣ ହେବାକୁ ଦୁଃଖ, ସ୍ମରଣ କରେ କଳା ଶ୍ରୀମୁଖ ହେ ।୧।
ଭାରଣ କର ବା ନ କର ଦାସକୁ ବାରଣ କର ବା ପାଶ ହେ ।
ଢାରଣ ପତାକା ଗୃହୁଁ ଗୃହୁଁ ଦଳ ନାଶିବଲ ପୀତବାସ ହେ ।
ମା-ଚମଣ ସବତ୍ରା'ହ୍ମା, ସାର ମଣିକୁ ହେବାକୁ ସାଧୁ ହେ ।୨।
ସ୍ଫୁରଣ ଭଣିପୁ ଦାରଣ ମୋ ପଣ ପଣକରେ ନୋହୁଁ ଭଙ୍ଗ ହେ ।
ତରଣ ଦଶନେ ଧରି ମାଗୁଅଛି ଖୀର ନରସିଂହ ଅଙ୍ଗ ହେ ।
ଧୀର ଜନକ ନନ୍ଦିନୀ, ଚିର ଆଶା ମୋ ନ ତଥି ଟାଳି ହେ ।୩।
ସୁର ନାଗ ନର ବନ୍ଦନ ଶ୍ରୀଧର ପୂରନ୍ତୁ ଦର୍ଶହାସ ହେ ।
ଜର ଓଷାରିଆ ମୂରଲୀ ବଦନ ଚୂର ମୋ ପାତକ ଗିରି ହେ ।
ସୁରସିକ ବନମାଳୀ, କୁନ୍ଦଶୀର ଅଞ୍ଜଳି ସାଳି ହେ ।୪।
ଅରଣ୍ଡ ରକ୍ଷକ ତୁମ୍ଭ ପ୍ରଭୁ ଏଣା ଦେଖାଉଛ ଭେଟିଠାରେ ହେ ।
ପରଖ କର ଏ ନରକ ଗୁହାର ଉଦ୍ଧପୂଷ୍ପ ଜଗହାରେ ହେ ।
ଦର ନାଚେ ଗଉର, ନର ଅଧମ ବୈଦ୍ୟ ବ ଗ୍ରହ ହେ ।୫।



## ଆତ୍ମୋପଦେଶ

୩୭—( ଭଜମନ ରାଧେକୃଷ୍ଣ ବୋଲି—ବୃତ୍ତେ )

ହରେ କୃଷ୍ଣ ମହାମନ୍ତ୍ର ଏ ଅମୂଲ୍ୟ ଧନ ।
ଗୋପନେ ଜପି ଜଗତରେ କର ସଂକୀର୍ତ୍ତନ (ଭାଇରେ)
କର ସଂକୀର୍ତ୍ତନ, ଅଟେ ଏ ଅମୂଲ୍ୟ ଧନ । ଘୋଷା ।
ହରେ କୃଷ୍ଣ ହରେ କୃଷ୍ଣ କି ମଧୁର ଘେନ ।
କୃଷ୍ଣ କୃଷ୍ଣ ହରେ ହରେ କର ଆସ୍ୱାଦନ (ଭାଇ)
ହରେ ରାମ ହରେ ରାମ ଶୀତଳ ଚନ୍ଦନ ।
ରାମ ରାମ ହରେ ହରେ ତାପ ବିନାଶନ (ଭାଇ) ।୨।
ହରେ କୃଷ୍ଣ ରାମ ଏହି ଷୋଳଗୋଟି ନାମ ।
ଜଳନ୍ତ ପାଳନ୍ତେ ଷୋଳ ବର୍ଣ୍ଣାଷ୍ଟରେଣ (ଭାଇ) ।୩।
ନାମାର୍ଥ ଜାଣିତା ଧରି କରରେ ଭଜନ ।
ଛୁଟିବ ପଳାଇବ ତୋର ଯେ କଲୁଷମାନ (ଭାଇ) ।୪।
କହେ ବଇଷ୍ଣବ ଦାସ ନୁହରେ ଅଜ୍ଞାନ ।
ଶ୍ରୀଗୁରୁ ପ୍ରଦତ୍ତ ଏହୁ ଅପୂର୍ବ ରତନ ( ଭାଇ) ।୫।



## ରାଧାଭାବାବେଶ

୩୮—( ନଟବର ନାଗର ସୁନ୍ଦର ଷଡ଼ଭୁଜ—ବୃତ୍ତେ )

ଅହା ମୋର ନାଗର ସୁନ୍ଦର ! କାହା ଲାଗି ହୁଅ ଏତେ ସରୁ ହେ ।
ଯାହା ରାଧେ ରାଧେ ମୁଖେ ଜପ ଛଳ
ଆହାର ଭୂଷଣ ତ୍ୟାଗକର ହେ । ଘୋଷା ।
କାହା ଭୁରୁ ନୟନକୁ ଟେକି, ନାଚୁଅଛ ରହସ୍ୟ ଏ କି ?
ଗ୍ରାହକ କେ ଅଛ ଧାଇଁଅସ ବୋଲି
ଡାକୁଛ ମହା ପାଗଳ ପରି ହେ ।୧।

ବାହାରେତ କଣୋସ୍ତି କାନ୍ତି, ଜବ ଜବ ଝଂକେଳ ଅଛି,
ଅନ୍ତରେ କାଳିଆ ଚନ୍ଦ୍ର ଲୁଚିଅଛ
ଯୁକ୍ତି ଦେଶେ ନାହିଁ ଭଲ କର ହେ ।୨।

ମନେ ଘୃଣା ନକୁଞ୍ଜଲୀଳା, ଘନେ ଗୃହେ ବ୍ରଜ ଆଗଲା,
ଥରୁଛ ଡରୁଛ କନ୍ଦନ କରୁଛ
ପ୍ରିୟ ଗଦାଧର କର ଧର ହେ ।୩।

ଦେଖିଲେ ଦେଖିଲେ ବାହାକୁ ଛୁଅ, ଅବନତ ବଦନେ ବସ,
ଗଣ୍ଡେ ମଣ୍ଡି ପାଣି, ହାହା ବନ୍ଧୁ ଭଣି
ଗଡ଼ୁଛ ପଦକୁ ଅପସର ହେ ।୪।

କଣାପାଏ ରାଧିକା ଭାବ, କେବଳ ଅଛ ମାଧବ,
ତେଣୁ ବନାମୃତଲୀ ବଣ୍ଟିଦେଇଅଛ—
ବୈଷ୍ଣବ ଦାସକୁ ଦୂର କର ହେ ।୫।

—୦—

## ସୁରଧୁନୀ ତୀରେ

୩୮—( ଦେଖ ଦେଖ ପିଙ୍ଗଳୀ ହାଟଶୁଣ୍ଡ ଜଣି—ବୃନ୍ଦେ )

ସୁରଧୁନୀ ତୀରେ ମୁରଲୀ ବଜାଏ ନବୀନ କିଶୋର ଗୋରା ।
ମନେ ହୁଏ ଯେତେ ଏଥିକି ଗୋ ହେତେ ଗୋକୁଳ ଦୁଃଖ ପାଶୋର ।
ସେହି ବ୍ରଜଭାବେ ହୋଇଛନ୍ତି ଭୋଳା । ରାଧାନାମ ପ୍ରେମେ ନାଚିବା ଭୁଲା ।
ପ୍ରିୟ ଗଦାଧର ପଣ୍ଡିତ ପ୍ରବର ସେ ସ୍ଥାନେ ଉନ୍ମନ ହୋଇ ।
ଛନ ଛନ ମନେ ପ୍ରବେଶନ୍ତେ ଘନେ ସହାସେ ଶଚୀ ତନୟ ॥
ଯାଅ ପ୍ରାଣଧନ ବୋଲି ମଧୁରେ । ଆଲିଙ୍ଗନ କଲେ ନଅନ୍ତ ଧୀରେ ।୧।
ଏକାଳେ ହଟାଇ ଯାନ୍ତି ଆଡ଼ହୋଇ ନକୁଞ୍ଜରହସ୍ୟ ଜାଣି ।
ଅନ୍ୟ ସହଚରେ ବଂଶୀ ସ୍ୱବନାରେ ଖେଳନ୍ତି ଯେପରି ଖେଳଣି ।
ଯାହା କ ଆନନ୍ଦ ଜଗତରେ ନାହିଁ । ଲୀଳାନନ୍ଦ ଭରେ ବାଇଁନ ହାଡ ।୨।

ଦେଖ ଗୋ ସଙ୍ଗାତ ଚିତ୍ତ ପ୍ରିୟାକାନ୍ତଙ୍କର ବ୍ରଜପ୍ରେମରସ ।
ବାମେଶ୍ୱରୀ ଗଦାଧର କି ସୁନ୍ଦର ଯୁଗଳ କେଳି ବିଳାସ ॥
କହେ ବଇଷ୍ଣବ ଚରଣ ଦାସ । ଏତ ଅପ୍ରାକୃତଭାବ ପ୍ରକାଶ । ୪ ।

—*—

## ଗୌରଗତ ପ୍ରାଣ

୩୯—( ହରି ହରି ଆର୍ କି ଏମନ ଦଶା ହବେ—ସୁରେ )

ଗଉର ଚରଣେ ମୋର ମନଟନ ବନ୍ଧା ।
ଗଉର ନାମଟି ମୋର ଏକମାତ୍ର ଧନ୍ଦା ।୧।
ଗଉର ପ୍ରେମରେ ମଜ୍ଜି ଛାଡ଼ି ଦେଲି ଘର ।
ଗଉର ଭକ୍ତଙ୍କ ସଙ୍ଗ କଲି ଏତେ ଦୂର ।୨।
ଗଉର ସୁନ୍ଦର ରୂପେ ଭୁଲି ଗଲି ସବୁ ।
ଗଉର କରାଇ ଦେଲେନାହିଁ ମୋତେ ବାବୁ ।୩।
ଗଉର ପିନ୍ଧାଇ ଅଛି ଏ କୌପୀନ ଡୋର ।
ଗଉର କହୁଛି ସ୍ୱପ୍ନେ ଅଟଇ ମୁଁ ଚୋର । ୪ ।
ଗଉର ଗଉର ଭଜି ପାଗଳା ହୋଇଲି ।
ଗଉର ଚିଜଟି ସେଠ କାଳ ହରାଇଲି । ୫ ।
ଗଉର ଲାଗି ମୋହନ ଏ କାଙ୍ଗାଳ ଦଶା ।
ଗଉର ମଣ୍ଡଳଭୂମି ମାଗୁଅଛି ଭିକ୍ଷା । ୬ ।
ଗଉର ମୋ ଦୀକ୍ଷାଗୁରୁ ଗୌର ଶିକ୍ଷାଗୁରୁ ।
ଗଉର ସମ୍ପର୍କ ଟି ପୂଜାର ମୋ ଦୂରୁ । ୭ ।
ଗଉର ସ୍ୱବରେ ଦାସ ବଇଷ୍ଣବ ଥାଉ ।
ଗଉର ଗଉର ବୋଲି ଏ ଜୀବନ ଯାଉ ।୮।

—o—

## ହିତ ଉପଦେଶ

୪୦—(ଅସ୍ୱ ସ୍ୱଜନ ଘଇ, ଖୋଲ କରତାଳେ ଅନନ୍ଦେ—ବୃନ୍ଦେ)

ଗାଅ ଗାଅ ଭବ,

ଅବ ପ୍ରେମେ ମାତ ଗକର ବଢାଇ ହେ । ଘୋଷା ।

ଦୁର୍ଲ୍ଲଭ ମନୁଷ୍ୟ ଜନ୍ମ, ଲଭି ନ ହୁଅ ଅଧମ ହେ, ଭାଇ ।

(ଏ ହେ) ବିଷସ୍ୱ ବାସନା ଛାଡ଼ି ଚେତନ ପାଇଁ ହେ । ୧ ।

ହରିନାମ ଏକା ସାର, ଆଉ ସକଳ ଅସାର ହେ, ଭାଇ ।

(ଏବେ) ସାଧୁ ଶାସ୍ତ୍ର ଗୁରୁ ବାକ୍ୟ ପାଳ ଭ୍ରମ ନୋହୁ ହେ ।୨।

ସେବା କପୂର୍ଣ୍ୟର ଫଳେ, କ ଅସାଧ୍ୟ ମହ୍ତିତଳେ ହେ, ଭାଇ ।

(ଗୀତା) ଭାଗବତେ କହୁଛନ୍ତି ସବୁ ସମଜାଇ ହେ । ୩ ।

କଳିଯୁଗେ ନାମ ଭଜ ଆନେ ଗତ ନାହିଁ ଜାଣ ହେ, ଭାଇ !

(ଏହା ଶୁଣିଛ ଶ୍ରବଣେ ଚେତେ ଥର ଚେତେ ଠାଇଁ ହେ ) ।୪।

ଯଜ୍ଞଦାନ ତପବ୍ରତ, ସବୁଠୁଁ ନାମ ପବିତ୍ର ହେ, ଭାଇ ।

(ସଦା) ରଜନୀ ଦିବସେ ମନ୍ତ୍ର କରତାଳ ବାଇ ହେ । ୫ ।

କହେ ବଇଷ୍ଣବ ଦାସ, ଛାଡ଼ ମାୟା ମୋହ ପାଶ ହେ, ଭାଇ ।

(କଷ୍ଟେ) ଶ୍ରୀଗୁରୁ କରବେ ଦୟା କବୁଁ ହେବ ଜାହୁ ହେ ।୬।

---

## ନୀଳାଚଳେ ଶ୍ରୀ ଗୌରାଙ୍ଗ

୪୧--(ଶ୍ୟାମ ସମ କମଣୀୟ ତ ନାହିଁ ଅଦ୍ୱ—ବୃନ୍ଦେ)

ବଡ଼ଦାଣ୍ଡେ କେ ଯାଉଛୁ ହରି ବୋଲି ହେ ।

ଅଙ୍ଗେ ଚନ୍ଦ୍ରବାସ କନ୍ଧେ ଭିକ୍ଷା ଝୋଲି ହେ । ଘୋଷା ।

ମହାପାଗଳ ପରାୟେ, ହସେ କାନ୍ଦେ ନାଚେ ଗାଏ,

ହୁଂକାର ଗର୍ଜନେ ଧାଏଁ, ଝୁଲି ଝୁଲି ହେ । ୧ ।

ତା ଚରିତ ଅଲୌକିକ, ପ୍ରେମେ ଅଙ୍ଗ ପୁଲକତ,

ଯାଚୁଅଛୁ ନାମ ବିଭୁ ରସେ ଭୁଲି ହେ । ୨ ।

ପଡ଼ଇଲେ ଅନେକ ଜନ, ଗୋଡ଼ାନ୍ତି ଉଚ୍ଚାର ନାମ,
ବାଛି ନ ନେଲଇ ହୋନ୍ତି ଟେକାଟେଳି ହେ ।୩।
ଦୁଇ ଦେହ ଏକ ହୋଇ, ଜନମିଛୁ ଜେ ଜବୋଲଇ,
ବୈଷ୍ଣବ କହେ ମୁଁ ଚିହ୍ନି ନ ଚିହ୍ନିଲି ହେ । ୪ ।

—*—

## ମନଃଶିକ୍ଷା

୪୨—( ବ୍ରଜ ବନକୁ ମନ ଯା ଗୁଲରେ—ବୃନ୍ଦେ )
ସାଧୁ ଜନ୍ତାଳେ ହୁଅନା ଘାଣ୍ଟିରେ ମାନସ ।
ମାନ ମୋ କଥାଟି । ଘୋଷା ।
ଦେଇଚନ୍ଦ୍ର ଗୁରୁ ଏଥି ଦୃଢ଼ବନ୍ଧୁ କାମ ରୋଗ ଚିକିତ୍ସାଟି ।
ଶ୍ରୀ ଗୌରାଙ୍ଗ ନାମ ପ୍ରେମ ରସାୟନ ପିଉଥା ତୁ ଚୋର ବାଟିରେ ।୧।
ଗ୍ଧଉଦ୍ଧବ ଅନୁଚର ଭକ୍ତସୁଧା ସାରୀ ପାଚନ ପକାଅ ଗୃହି ।
ଅବଧାର-ଦଶମୂଳ ସେବନରେ ତଡ଼ିବୁ ବିଷମ ଘାଟିରେ ।୨।
କବିରାଜ ବୈଦ୍ୟ ବୈଷ୍ଣବ ଯେ ଭେଦ କହ୍ନୁଚନ୍ଦ୍ର ଧର ନାଡ଼ୀ ।
ଅତ୍ୟନ୍ତ ସୁବାସ ଭବ ବ୍ୟାଧି ନାଶ-କାରି ସେ ଭଇଲ ସ୍ୱଟିରେ ।୩।
ବଡ଼ ମହାଜନ ଯେଉଁ ପାଞ୍ଚଜଣ ତହୁଁ ଟନ ଅଣ ଘଟି ।
ଛଅ ଗୋସାଇଙ୍କ ଆଦେଶକୁ ପାଳି ଖାଅ ତୁ ସାଧୁ ମୁଥାଟି ରେ ।୪।
ମୁଖରେ ଅପଥ୍ୟ ଅସାଧୁଙ୍କ ସାଥି ଦେଖିଯିବ ଦୁର୍ଦ୍ଦଶାଟି ।
କହେ ବଇଷ୍ଣବ ନିମିଷକେ ଲବ ନ ଛାଡ଼ ଏ ସୁବଧାଟି ରେ । ୫ ।

—୦—

## ଅଦ୍ବୈତ ମନ୍ଦିରେ ଗୋରାର ମୁଣ୍ଡୋହ୍ଵ

୪୩—( ବସିଲେ କଶୋରୀ ଉଠିଲେ କଶୋରୀ—ବୃନ୍ଦେ )
ଶାନ୍ତି ପୁରନାଥ, ପ୍ରଭୁ ଶ୍ରୀ ଅଦ୍ବୈତ,
ସୀତା ଦେବୀ ପ୍ରାଣଧନ । (ଗୌର ଅବତାର କର୍ତ୍ତା )
ଅତ ହରଷରେ, ସେ ଷଡ଼ ରସରେ,
ପାକ କରଇ ନିର୍ମାଣ । ( ଯତନେ ସବୁ ରଖାଇଲେ ) । ୧ ।

ଆସ ଗୌରଚନ୍ଦ୍ର, ବୋଲିଣ ଆନନ୍ଦ
ମନେକଲେ ଆବାହନ । ( ଆଦର କରିଣ କେତେ )
ସଙ୍ଗେ ନିତ୍ୟାନନ୍ଦ, ପାରିଷଦ ବୃନ୍ଦ
ତତ୍‌କ୍ଷଣେ କଲେ ଗମନ । ( ପ୍ରଭୁ ମହାପ୍ରଭୁ ଭୁଲେ ) । ୨ ।
ଦିବ୍ୟଶାଳି ଅନ୍ନ ବିବିଧ ବ୍ୟଞ୍ଜନ ।
ଘୃତ ଦଧି ଦୁଗ୍ଧ ସବୁ, ( ପିଠାଇ ଛେନା ଶାକରେ )
ଲଡ଼ୁ ପୁରି ଆଦି, ଅନେକ ସମ୍ଭାର—
ଥିଲେ ଅଦ୍ୱୈତ ଠାକୁର । ( ସଂଖ୍ୟାତ ନୁହଇ କର ) । ୩ ।
ବସିଲେ ଆସନେ, ପ୍ରେମାନନ୍ଦ ମନେ,
ନିତ୍ୟାନନ୍ଦ ଗୌରଚନ୍ଦ୍ର ( ମୁଣ୍ଡୋଳି କରିବା ଲାଗି । ୪ ।
ଆପଣେ ଅଦ୍ୱୈତ, ବସି ତାଙ୍କ ସାଥ,
ଭୁଞ୍ଜନ୍ତି ହୋଇ ପ୍ରମୋଦ, ( ନାନା କଉତୁକ ଛଳେ ) । ୫ ।
ଅଦ୍ୱୈତ ମନ୍ଦିରେ, ଗୌରଚନ୍ଦ୍ରଙ୍କର
ଅପୂର୍ବ ଭୋଜନ ଲୀଳା, ( ଆହା କି ଆନନ୍ଦ ତହିଁ ) । ୬ ।
ସେ ଉଚ୍ଛିଷ୍ଟ ଆଶ କରିଅଛୁ ଦାସ
ବୈଷ୍ଣବ ମହା ପାଗଳା ( ପ୍ରେମାନନ୍ଦେ ଭୋଳ ହୋଇ ) । ୭ ।

—✱—

## ନୀଳାଚଳେ ନୂଆ ସନ୍ନ୍ୟାସୀ

୪୪—( ଏ ପଥେ ଯାଉଛନ୍ତି ପରା ମୁରଲୀ ଧରା—ବୃନ୍ଦେ )

ଏ ପରା ସେହି ଗୋ ସହି, ଜଗନ୍ନାଥ ଚନ୍ଦ୍ରମା ନାମ କମାଇଁ,
ଆସିଛନ୍ତି ସନ୍ନ୍ୟାସୀ ହୋଇ, ଶ୍ରୀମତୀ ରାଈଙ୍କ
ତିନିଗୋଟି ଋଣ ସୁଝିବା ପାଇଁ । ଘୋଷା ।
ବୃନ୍ଦାବନେ କୁଞ୍ଜ ମନ୍ଦିରେ, ବୃନ୍ଦାଦି ସଖୀଙ୍କ ମଧ୍ୟରେ,
କରିଥିଲ ଦୃଢ଼ ପ୍ରତିଜ୍ଞା, କିଶୋରୀ ଆଜ୍ଞା,
ପାଳିବ ଅବଶ୍ୟ ସନ୍ଦେହ ନାହିଁ । ୧ ।

ରାଧା ସବେ ବାନ୍ଧିଥିଲେ ବାନ୍ଧୁ, ଧରିଅଛୁ ଗଉର ତନୁ,
ରାଧା ପ୍ରେମ ପାଗଳ ନଦୀଆ, ଚାନ୍ଦେ ବୁଲଇ,
ରାଧାକାନ୍ତି ଅଙ୍ଗେ ଫୁଟି ବଶଇ ।୨।
ସେହି ଠାଣି ସେହି ଗୁହାଣି, ସେହି ସୁଧା ଜଣା ବାହାଣୀ
ସେହି ହାସ ଚଟକ ଭଙ୍ଗୀ, ନୂଆ ବୈରାଗୀ,
ଦେଖିଲେହେଁ ତ ତାର ଯାଡ଼ ନ ଯାଇ ।୩।
ଏବେ ଦୁଃଖୀ ବୈଷ୍ଣବ ଦାସ, ଭଇବର ଚାହିଁବା ଆସ,
ଶଚୀଙ୍କର ଅଞ୍ଚଳନିଧି, କୃପାବାରିଧି,
ଦର୍ଶନେ ପାତକ ଦେବା ହଜାଇ ।୪।

—o—

## ରୂପାନୁରାଗ

୪୫—(ଏଲବାର କରୁଣା କର ବୈଷ୍ଣବ ଗୋସାଇଁ—ବୃନ୍ଦେ)

ଅନୁକ୍ଷଣେ ଗୋରାରୂପ ନେନେ କଳ ପର ଗୋ ।
ଯେବେ ପାସୋରିଲେ ହେଲେ ନ ଗଲା ପାଶୋର ଗୋ ॥
ହାଟେ ବାଟେ ନଦୀଘାଟେ ଯେଣେ ଦେଲି ଗୁହି ଗୋ ।
ତେଣେ ତ ଦଶିଲେ ସେହି ସୁନ୍ଦର କନାଇଁ ଗୋ ।୧।
ଶୟନେ ସ୍ୱପନେ ଗୋରା ରବ ପଡ଼େ ମନେ ଗୋ ।
ଦେବେବେହେଁ ଅବୋଧ ମନ ନ ରହେ ସଦନେ ଗୋ ।୩।
ବଇଷ୍ଣବ ଦାସ ବୋଲେ ଗୋରା ଅନୁରାଗେ ଗୋ ।
ନିରବଧି ସେହି ଛବି ମୋ ହୃଦୟେ କାଗେ ଗୋ ।୪।

———

## ଗୌର ଅନୁଗତ

୪୬—(ନିତାଇ ନାଗର ରସେର ସାଗର—ବୃନ୍ଦେ)

ଗଉର ମୋହର ଭଜନ ପୂଜନ ଗଉର ଗଳାର ହାର ଗୋ ।
ଗଉର ମୋହର ହୃଦୟ ଚନ୍ଦନ ଗଉର ନାମ ମୋ ସାର ଗୋ ।୧।

ଗଉର ମୋହର ଜୀବନ ସଙ୍ଗାଳି ଗଉର ମୋହ ଜୀବକା ଗୋ ।
ଗଉର ଚରଣେ ଏ ପିଣ୍ଡ ସେ୍ୱଣ ସହୁତେ ହୋଇଛୁ ବିକା ଗୋ ।୨।
ଗଉର ମୋହର ନୟନ ପିତୁଳି ଗଉର ମୋହର ଗତି ଗୋ ।
ଗଉର ମୋହର ଜାତିକୁଳ ବନ୍ଧୁ ଗଉର ମୋହର ପତି ଗୋ ।୩।
ଗଉର ମୋହର ଲମ୍ପଟ ଛଇଳ ଗଉର ମୋହର ସାଥି ଗୋ ।
ଗଉର ଲାଗି ଏ ବୈଷ୍ଣବ ଦାସ ନ ଜାଣଇ ଦିନ ରାତି ଗୋ ।୪।

—*—

## ବ୍ରଜଧବେ ଗୌରଚନ୍ଦ୍ର

୪୭—(ଜୟରେ ଜୟରେ ଗୋରା ଶ୍ରୀ ଶଚୀନନ୍ଦନ—ବୃନ୍ଦେ )

ବ୍ରଜଧବେ ଗୌରଚନ୍ଦ୍ର ନଦୀୟା ଗଗନେ ।
ଉଦୟ ହୋଇଲେ କଳି ତମ ବିନାଶନେ ହେ ।୧।
ରାଧା ପ୍ରେମ ଋଣ ପରିଶୋଧ କରିବାରେ ।
ବିକାନ୍ତି ପ୍ରେମ ଅମୃତ ବୁଲି ଦ୍ୱାରେ ଦ୍ୱାରେ ହେ ।୨।
ଦେଖ ଦେଖ ଏତ ସେହି ବ୍ରଜରାଜ ସୁତ ।
କଳା ତନୁ ଗୋରା ହେଲେ ଅତି ଅଦଭୁତ ହେ ।୩।
ଅବିକଳ ସେହି ଠାଣି ନଟବର ବେଶ ।
ଶ୍ରୀ ବ୍ରଜମଣ୍ଡଳ ଲୀଳା କରନ୍ତି ପ୍ରକାଶ ହେ ।୪।
ହରିନାମ ଛଳେ ପାପୀ ପାଷଣ୍ଡ ତାରନ୍ତି ।
କେ ପାତ୍ର କେବା ଅପାତ୍ର କିଛୁ ନ ବାରନ୍ତି ହେ ।୫।
ଦୀନହୀନ ଅକିଞ୍ଚନ ଜନେ ବଡ଼ ଦୟା ।
ଅଧମ ବୈଷ୍ଣବ ଦାସ ମାଗେ ପଦ ଛାୟା ହେ ।୬।

—*—

## ନାମ ବିତରଣ

୪୦—(ଗୌରାଙ୍ଗ ବଳଦେବ ହେବେ ମୂଳକ ଈଶ୍ୱର—ବୃନ୍ଦେ)

ଆଣିଛନ୍ତି ନିତ୍ୟାନନ୍ଦ ଶ୍ରୀ ନାମ ପସରା ।
ବଣିଜାର ଏ ଭଳି କେ ନ ଥିଲା ଏ ଧରା ।୧।
ଜାଣି ଜ୍ଞାନହୀନ ପାପୀ ତାପୀଙ୍କି ଡାକନ୍ତି ।
ବାଣୀ ମଧୁରେ ତାଠାରୁ କିଛି ନ ନିଅନ୍ତି ।୨।
ପାଣି ପ୍ରସାରି ଡାକନ୍ତି ସସ୍ମିତ ବଦନେ ।
ଠାଣି ଦେଖି ନ ଭୁଲିବ କେ ରହୁ ଗୁମାନେ ।୩।
ମାଣିକ୍ୟ ହୀରକ ଆଦି ଅଛି ଯେତେ ରତ୍ନ ।
ପାଣିକି ପିଙ୍ଗି ଗ୍ରାହକେ ନାମ କଲେ ଯତ୍ନ ।୪।
ଖାଣି ଭକ୍ତି ଏ ନ ରଖିଲେ କେହୁ ପାଶେ ।
ପ୍ରାଣୀ ନିସ୍ତରନ୍ତି ଅବଧୂତ ବାହୁ ପାଶେ ।୫।
ଘେନି ପ୍ରେମସୁଧା ପିଆଇଲେ ସର୍ବ ଜନେ ।
ଟାଣିତ ନ ନେଲେ ବୈକୁଣ୍ଠକୁ ସନ୍ନିଧାନେ ।୬।
(ଆଖର) ମୁଁ ଅତି ଅଧମ ହେ । ନ ପାଇଲି ନାମ ଧନ ।
ମୁଁ ଅତି ଅଧମ ହେ, ପ୍ରଭୁ ନିତ୍ୟାନନ୍ଦ ରାମ (ମୁଁ ଅତି ଅଧମ ହେ)

---

## ମନଃଶିକ୍ଷା

୪୧—(କଳାସିଂହ ବାହିନୀ ଅନ୍ତରେ—ବୃନ୍ଦେ)

ମନ ଛାଡେ ବୃଥାଇ ବହୁଛି ନର
ମିଛଟାରେ ଭୁଲି ଯା ନା ।
ଶ୍ରୀଗୌରାଙ୍ଗ ପଦ ଅମୂଲ୍ୟ ସମ୍ପଦ
ଛାଡ଼ି ମାୟା ବଶ ହୁଅ ନା । ଘୋଷା ।
ଦେଖ ଏ ସଂସାର ସକଳ ଅସାର
କେବେ ପଡ଼ ନେତ୍ରେ ଧାଁ ନା ।

ଚୈତନ୍ୟ ଚରିତ ସୁଧା ଏଡ଼ି ଦେଇ

ବୃଥା ଗ୍ରାମ୍ୟ ଗୀତ ଗା ନା ।୧।

ପତିତମାନଙ୍କୁ ଗତିଦେବା ପାଇଁ

ଡାକୁଛନ୍ତି ଥରେ ଜାନା ।

ଫରହର ବଡ଼ ଦେଉଳେ ଜଡ଼େ ଯା

ପତିତ-ପାବନ-ବାନା ।୨।

ଦ୍ୱାରେ ଦ୍ୱାରେ ଫେରୁ ମାଗେ ମାଧୁକରୀ

ବ୍ରଜପୁରେ କର ଥାନା ।

ଛପନ କୋଟି ପ୍ରାଣୀଙ୍କି ଯେ ପୋଷନ୍ତି

ତୋତେ ନ ଦେବେକି ଦାନା ।୩।

ଏ ଦେହରେ ଯେତେ ପାତକ ଅର୍ଜିଛୁ

ସାଟ୍ଳୁଙ୍କୁ ତାହା ଛପା ନା ।

ବଇଷ୍ଣବ ଦାସ ବୋଲେ ଜନ୍ମ-ଇଶ

ସଭାରେ ଗୀତ କମ୍ପାନା ।୪।

—*—

## ଦୋଳଲୀଳା

୫୦—(ଗୃହି ଚମକ ପଡ଼ଲ—ବୃଥେ)

ପ୍ରିୟ ପାର୍ଷଦ ସଙ୍ଗେ

ଦୋଳଲୀଳା ଆରମ୍ଭିଲେ ଗୌରାଙ୍ଗ କ ରଙ୍ଗେ । ଘୋଷା ।

ମନେ ପଡ଼ଗଲା ସେହୁ ବୃନ୍ଦାବନ ଭାବ ।

ଆପଣେ ହୋଇଲେ ଲୁଚ୍ୟ ରାଇ ରାଜା ଠାବ ।୧।

ନିକୁଞ୍ଜ ରାଜ୍ୟରେ ମନ୍ତ୍ରୀ ପାତ୍ର ଆଦ ଯେତେ ।

ଲଳିତା ବିଶାଖା ଚନ୍ଦା ସଖୀଏ ସମସ୍ତେ ।୨।

କଚୁଆଳ ପଣେ ଶାଢ଼ୀ ବାନ୍ଧିଲେ ମୋହନ ।

ସେହୁ ବେଶ ଅଙ୍ଗୀକାର କଲେ ଶ୍ରୀ ଚୈତନ୍ୟ ।୩।

ହା ରାଧେ ଶ୍ରୀରାଧେ ଜୟ ରାଧେ ରାଧେ ବୋଲି ।
ଶ୍ରୀ ବୃନ୍ଦାବନେ ପଡ଼ିବ ଦେଲେ ବୁଲି ବୁଲି ।୮।
ଶେଷେ ଯୁଗଳ ମିଳନ କରାଇଲେ ସଖୀ ।
ସୁମନେ ସୁମନ ଦୋଳା ଉପରେ ଝୁଲାଇ ।୯।
ଯେ ଦେଖିଛି ସେହି ପିନା ଧନ୍ୟ ଏ ସଂସାରେ ।
ବୈଷ୍ଣବ ଦାସ ତାହା ଦେଖିବ କି ଥରେ ? ।୧୦।
(ସତେ) ଶ୍ରୀଗୁରୁ ସ୍ୱରୂପା ସଖୀଙ୍କର ଆଜ୍ଞା ହେବ ।
ଗୌରଲୀଳା ରସେ ଆସ୍ୱାଦିବ ବ୍ରଜରସ ।୧୧।

—*—

## ଝୁଲଣ ଲୀଳା

୫୧—( ସ୍ୱପନେ ଦେଖିଲି ଗୋ ମୁରଲୀପାଣି—ବୃନ୍ଦେ )

(ଆଜ) କୁସୁମ ଦୋଳା ପରେ ଗୌର ଗୋବିନ୍ଦ ।
ଝୁଲନ୍ତି କି ସୁନ୍ଦର ନଦୀଆ ଚନ୍ଦ ଯେ ।
ଝୁଲାଉଛନ୍ତି ଧୀରେ ଭକତ ବୃନ୍ଦ ।
ନାନାବିଧ ବାଦ୍ୟ ସଙ୍ଗେ ସଙ୍ଗୀତ ଛନ୍ଦ ଯେ ।୧।
(ତହିଁ)ଗାଉଛନ୍ତି ସ୍ୱେଚ୍ଛ ବାସୁଘୋଷ ମୁକୁନ୍ଦ ।
ଲଭୁ ଅଛନ୍ତି ମନେ ମହା ଆନନ୍ଦ ଯେ ।
ଚହଟୁଛି ଚନ୍ଦନ ଚୁଆ ସୁଗନ୍ଧ ।
ବହୁଛି ଶୀତଳ ବାତ ମନ୍ଦ ମନ୍ଦ ଯେ ।୨।
(ଗୌର) ଗଳାରୁ ବନମାଳା ଲମ୍ବେ ପଦ ।
ଝଟକୁଛି କନକ ମୃଣାଳବନ୍ଦ ଯେ ।
ଦକ୍ଷିଣେ ବସେ ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ।
ଆହା କି ମନୋହର ଯୁଗଳ ଚାନ୍ଦ ଯେ ।୩।

(ଗୌର) ନଦୀୟା ନାଗରୀଙ୍କ ନୟନ ଫାନ୍ଦ ।
ଶଚୀ ଦେବୀଙ୍କ ସୁତ ସଚ୍ଚିଦାନନ୍ଦ ଯେ ।
ଦୀନ ହୀନ ଏ ଦାସ ବୈଷ୍ଣବ ମନ୍ଦ ।
ସେବି ନ ପାରିଲା ସେ ଚରଣ ଦ୍ୱନ୍ଦ ଯେ ।୪।

—※—

## କଳିଯୁଗ ଧର୍ମ

୪୨—(ଯେ ମୁଖ ଦେଖିଲେ ଦୁଃଖ ଯାଏ—ବୃନ୍ଦେ)

କଳିଯୁଗ ଧର୍ମ, ସଙ୍କୀର୍ତ୍ତନ ମର୍ମ,
ଶିକ୍ଷାଦେଲେ ଯେତୁ ଦେଶେ ଗୋ ।
ସେ ଏବେ ଦୁଆରେ- ଦୁଆରେ ବୁଲନ୍ତି,
ନବୀନ ସନ୍ନ୍ୟାସ ବେଶେ ଗୋ ।୧।

ଯାଇ ଶାନ୍ତି ପୁରେ, ଅଦ୍ୱୈତ ମନ୍ଦିରେ,
ଭିକ୍ଷାକଲେ ଆନନ୍ଦରେ ଗୋ ।
କେତେ ସଙ୍ଗୀଗଣ, କରି ସଙ୍କୀର୍ତ୍ତନ,
କରନ୍ତି ତ ସ୍ୱଚ୍ଛନ୍ଦରେ ଗୋ ।୨।

ଯାଇଥିଲେ ତହିଁ, ସବୁ ଶଚୀ ଆଈ,
ହା ନିମାଇଁ ବୋଲି କାନ୍ଦ ଗୋ ।
ବୁଝାଇ ସୁଝାଇ, ବହୁ ମାନ୍ୟ ହୋଇ,
ବୋଧିଲେ ସେ ପ୍ରେମ-ନନ୍ଦୀ ଗୋ ।୩।

ହୋଇତ ନ ଥିଲା, ସନ୍ନ୍ୟାସର ବେଳା,
ଗୋରା ଏହା କଲେ କେଣେ ଗୋ ।
ବୈଷ୍ଣବ ଅଧମ, କହେ ଯୁଗଧର୍ମ,
ଆଚରିଲେ ସେ ଆପଣେ ଗୋ ।୪।

— -- —

## ନଦୀୟାବାସୀ

୬୩—( କନକ- କାନ୍ତି-ଗଉର—ବୃତ୍ତେ )

ଚମତ୍କାର ରୂପ ରାଶି ।
ନଦୀୟା ବଜାରେ ନୂଆ ସନ୍ନ୍ୟାସୀ, ନଦୀୟାବାସୀ,
(ସେତ) ବୋଲେ ମୁଁ ଶ୍ରୀକୃଷ୍ଣ ଦାସୀ, ନଦୀୟାବାସୀ ।୧।
ପ୍ରେମ-ଅଶ୍ରୁ ନୀରେ ଭାସି ।
କେତେବେଳେ କହେ ମୁଁ ରାଧା ଦୋଷୀ ନଦୀୟାବାସୀ ।
(କମ୍ପା) କାନ୍ଦୁ କାନ୍ଦୁ ହଏ ହସି, ନଦୀୟାବାସୀ ।୨।
ଶ୍ରୀନାମ-ସୁଧା—ସରଶି ।
ହରଷ ବିଷାଦ ଭାବ ପ୍ରକାଶି, ନଦୀୟାବାସୀ ।
(ଅଷ୍ଟ) ସାତ୍ତ୍ୱିକେ ଥରଇ ଆସି, ନଦୀୟାବାସୀ ।୩।
ବିକାର ମନୁ ବିନାଶି ।
ମତ୍ତଗଜ ପରି ଅପେ-ପଳସି, ନଦୀୟାବାସୀ ।
(ଯାଏ) ପାଗଳ ପରାୟେ ଦଉଡ଼ି, ନଦୀୟାବାସୀ ।୪।
ଭ୍ରମି ଭ୍ରମି ଗୟା କାଶୀ ।
ଶ୍ରମୀ ହେଲ ପରି ଯାଜନ୍ତି ଧସି, ନଦୀୟାବାସୀ ।
(ଜମି) ବସୁଧ ନୁହଇ ବେଶି, ନଦୀୟାବାସୀ ।୫।
ବୈଷ୍ଣବ ଦାସ ଉଦାସୀ ।
ତା ଚରଣ ଧୂଳି ଅଛି ମନାସି, ନଦୀୟାବାସୀ ।
(ନଚେ୍ୟ) ଭଜ ଭଜ ହରା ନଶୀ, ନଦୀୟାବାସୀ ।୬।

—*—

## ବନ୍ଧୁ

୬୪—(ସତେ ମୋତେ ଗୁରୁଙ୍କର ଅଜ୍ଞା ହେବ-
କୃଷ୍ଣ କଥାରେ ମୁଁ ରସିବ—ବୃତ୍ତେ )

ବନ୍ଧୁ ବୋଲନ୍ତି ଯାହାକୁ ଜଗତ ବନ୍ଧୁତ ମୋହର କେଣେ ।
ଯେ ଅନାଥ ବନ୍ଧୁ ପ୍ରଭୁ କୃପାସିନ୍ଧୁ ଥିବ ତା ସେବକ ପଣେ ।୧।

ଦେଇ ବା ନ ଦେଇ ସେ ମୋତେ ଅଧାର ଆଶା ମୋ ପଦ୍ମ ଚରଣେ,
ପତିତ ପୋଦର ବନେ ଏ ସଂସାର ମଧ୍ୟେ ତାହାଙ୍କୁ ନ ଗଣେ ।
ଯାଉ ମୋର ଧନ ପ୍ରାଣ ବନ୍ଧୁଙ୍କର ପବିତ୍ର ନାମ ସ୍ମରଣେ ।
ଭବ ପରକାଳେ ସାହା ମୋର ସେହି ଯେ ଅଛୁ ଦେଉଛ ଭଣେ ॥
ଲେଖିବ ତା ଗୁଣ ତୃଙ୍ଗ ମହାଜନ ଅସ୍ମନ ଅନୁସରଣେ ।
ଗୌର ଗୌର ବୋଲି ଯାଉ ଏ ଜୀବନ ବୈଷ୍ଣବ ଦାସ ଭଣେ ॥

---

## ପ୍ରାର୍ଥନା

୪୫—( ଏହି କୁଞ୍ଜେ ଥିବେ ପଶ—ବୃତ୍ତେ )

ଶ୍ରୀ ନବଦ୍ୱୀପ ଚନ୍ଦ୍ରମା,
ଗୌର ଗୋବନ୍ଦ ହେ ଭକ୍ତ ଆନନ୍ଦସୀମା । ଘୋଷା ।
ଶଚୀଙ୍କ ଅଞ୍ଚଳ ନିଧି ଅହେ କରୁଣା ବାରିଧି
ମୁଁ ଅଧମ ଅପରାଧ ମାଗୁଛୁ କ୍ଷମା । ୧ ।
ଜାଣି ବା ନ ଜାଣି କେତେ ପାତକ ଅର୍ଜିଛୁ ନିତେ
ତେଣୁ ତବ ଶ୍ରୀ ଛାମୁରେ କରେ ପ୍ରାର୍ଥନା । ୨ ।
ଜନ୍ମପତ୍ତ ଦଣ୍ଡ ନାହି କରିବ ହେ ସ୍ୱବଗ୍ରାହି
ଅକଞ୍ଚନେ ଦୟା ବହି ଦୁଃଖେ ନ ଭ୍ରମା । ୩ ।
ବୈଷ୍ଣବ ଦାସର ଅଳି ଯେମନ ଦରିଦ୍ର ହଙ୍ଗୋଳି
ତୁମ୍ଭ ପ୍ରେମେ ହେଉ ନେତ୍ରେ ନେତ୍ର ଜମା । ୪ ।

---

## ନିତ୍ୟାନନ୍ଦ ଲଡ଼ୁ

୪୬—( ତଳାବାଦ୍ୟ କୁଟ୍ଟବ ଜଣେ—ବୃତ୍ତେ )

ଆସ ଭାଇ ଯିବାରେ ଧାଇଁ, ନିତ୍ୟାନନ୍ଦ ଲଡ଼ୁ ଖାଇବା ପାଇଁ । ଘୋଷା
ଗୋରା ନାମ ଦୋରା ମିଠାଇ, ଚାଖିଲେ ଜୀବ ଅବାଯାକ ହୋଇବୁ
ଭାଇ, ଗଦାଧର ଅଦା ଢିହିଁରେ ପଡ଼ୁଛୁ ଶ୍ରୀବାସ ସୁବାସ ଚହ୍ଟୁଥାଇ

ନବଦ୍ୱୀପ ସବ ଭାଇଙ୍କ ସ୍ଥାନେ ଜଣା ଶୁଣା ଯେତେ ଆସନ୍ତି ଖାଇ ।
ମୁକୁନ୍ଦ ମାଧବ ଶ୍ରୀପୁରୁଷୋତ୍ତମ ବାସୁବାବୁଙ୍କ ଖାତାରେ ଲେଖାଇ ।।
ନଦୀୟା ବଜାରେ ନାମ ଧର୍ମ୍ମଶାଳା ବସାଇଛନ୍ତି ଅଦ୍ୱୈତ ଗୋସାଇଁ ।।
ନିଅରେ ନିଅରେ ବୋଲି ଯାଚୁଛନ୍ତି ଦରଦ ବୁଝିମା କଳଣା ନାହିଁ ।
ଖାଇଲେ ବହିଲେ ଯେତେ ଦେଲେ ନେଲେ ଗୁଣକ ଦ୍ୱିଗୁଣ ସେ
ବୃଦ୍ଧି ପାଇ । କେତେ ଦୀନହୀନ ଅକିଞ୍ଚନ ଜନ ସେହୁ ଧନେ ଧନୀ
ହେଲେଣି ଭାଇ । ୪ । ମଧୁ ଶିଖରିଣୀ ପାୟସ ଲବଣୀ ସନ୍ଦେଶ
ପୁଚୁଲେ ଦିଅନ୍ତି ଯୋଗାଇ । ଯେ ଯାହା ଚାହୁଁଛି ସେ ତାହା ପାଉଛି
ନିରାଶେ କେ ଫେରି ଆସଇ ନାହିଁ । ୫ । ପରମ ଦୟାଳୁ ସାମନ୍ତ
ଏମନ୍ତ ସଦାବର୍ତ୍ତ ଦେଉଛନ୍ତି ଖଞ୍ଜାଇ । ହୀନ କପାଳିଆ ବଇଷ୍ଣବ
ଦାସ ଅଲସୁଆ ହେତୁ ନ ପାରେ ଯାଇ । ୬ ।



## ନିରାଶା

୫୭—( ଗଜଣିନ୍ଧ ଗଜ୍ଜ ଛଥାରେ—ବୃନ୍ଦେ )

ମୋ କରମ ବଡ଼ ଉଣାରେ ସଙ୍ଗାତ ! ମୋ କରମ ବଡ଼ ଉଣା ।
ଶ୍ରୀଗୁରୁ ଗୌରାଙ୍ଗ ଦାସଙ୍କର ସଙ୍ଗ ନ କରି ହେଉଛି ବଣାରେ । ଘୋର
ସଂସାର ଯାତନା ନ ଲଭିବ ବୋଲି କଲି ବୈରାଗ୍ୟ କଳ୍ପଣା ।
ଦେହବେନ୍ଦେଁ କଙ୍କାଳ ଜାଲ ମାଳମାଳ ଘୋଟେ ଏକ ବୃନ୍ଦାବନରେ ।
ଏକାକିନୀ ସେବା ନାମ ଭଜନାରେ ଛାଡ଼ିଲି ଗୃହ ଠିକଣା ।
ଭବସ୍ତୀଙ୍କ ତୁଲ ଜଗେ ଛତ୍ରୁଲୀ ନାସ୍ତି ବେ ମାଗନ୍ତି ଠାଣାରେ ।୨।
ତେଜି ତୀର୍ଥଧାମ ହେଳ କୃଷ୍ଣନାମ ହଜିବ ଥିଲା ଧାରଣା ।
ଏ ଜୀବନଧନ ଶ୍ରୀଗୁରୁଦେବଙ୍କ ନୋହିଲ ଯାହା କରୁଣାରେ ।୩।
ସାଧୁସଙ୍ଗ ମୋତେ ମିଳିବ କି ସତେ ସାର ହେଲ କଥା ପଣା ।
ବଇଷ୍ଣବ ଦାସ ହେଉଛି ନିରାଶ ଅଧମରେ ହୋଇ ଗଣାରେ ।୪।



## ବୈଷ୍ଣବ ସଙ୍ଗ ଲାଳସା

୫୮—( ଜୟ ଜୟ ଶ୍ରୀକୃଷ୍ଣ ଚୈତନ୍ୟ ନିତ୍ୟାନନ୍ଦ—ବୃତ୍ତେ )

ବୈଷ୍ଣବ ଗୋସାଇଁଙ୍କର କେବେ କୃପା ହେବ ।
ହରିକଥା ଆଳାପେ ମୋ ଦିନ ଯାଇ ଯିବ ହେ । ୧ ।
ଗୀତ ନୃତ୍ୟ ରଙ୍ଗେ ଗାତ୍ର ହୋଇବ କମ୍ପନ ।
ଅଶ୍ରୁଜଳେ ପୂର୍ଣ୍ଣ ହେବ ଏ ପାପ ନୟନ ହେ । ୨ ।
ବହିବ କି ସ୍ୱେଦ ଆଦି ସାତ୍ତ୍ୱିକ ବିକାରେ ।
ମଗ୍ନ ହେବି କେବେ ମୁହିଁ ପ୍ରେମ ସୁଧାନୀରେ ହେ । ୩ ।
ଜପିବି ସ୍ୱ ଇଷ୍ଟ ମନ୍ତ୍ର କେବେ ମାଳା ଧରି ।
ତେଜିବି ଆହାର ନିଦ୍ରା ଶାସ୍ତ୍ର-ଚିନ୍ତା କରି ହେ ।୪।
ଅଳସ ମେଣ୍ଟାଇ କେବେ ତେଜିବି ଗାରିମା ।
କେବେ ପ୍ରବେଶ ହୋଇବି ଭକ୍ତି-ଦ୍ୱାର ସୀମା ହେ । ୫ ।
ବୈଷ୍ଣବମାନଙ୍କ ଅବଶେଷ ଅନ୍ନ ଖାଇ ।
ବଞ୍ଚିବି ପ୍ରାଣ ଧାରଣ କେବେ ଅବା ମୁହିଁ ହେ । ୬ ।
ବୈଷ୍ଣବ ଚରଣ ଧୂଳି ତୋଳିଣ ସାଦରେ ।
କେବେ ବୋଳି ହେବି ମୋର ଶିର ହୃଦୟରେ ହେ । ୭ ।
ବୈଷ୍ଣବ ଶରୀରେ କୃଷ୍ଣ ସଦା ବିହାରନ୍ତି ।
ଶାସ୍ତ୍ର ପୁରାଣରୁ ଏହା ଶୁଣି ଅଛି ଶ୍ରୁତି ହେ । ୮ ।
ଶ୍ରୀଗୁରୁ ଶଙ୍କରଙ୍କର ହେଲେ କୃପା ଲେଶ ।
ପୂର୍ଣ୍ଣ ହେବ ଆଶା କହେ ବଇଷ୍ଣବ ଦାସ ହେ । ୯ ।

---

## ଭୁଲାମନ

୫୯—( ବାଉମନ ହେ। ବସି ହାଟକୁ ଖେଳା—ବୃତ୍ତେ )

ଭୁଲ ମନରେ, ଭଜ ହେଲୁକି ସତେ ?
ମୁକ୍ତିରୁ ପରାଭବ ନାହିଁ ତୋ ( ଭୁଲମନରେ ) । ଘୋଷା ।

ସ୍ବଳବର୍ଣ୍ଣ ଭାନ୍ତି ଗୌରାଙ୍ଗ ପଦ
ଯେ ଅଟେ ବଟପ୍ୟା ବଟପକୁ ଗଦ
ଗୁଳର ବଦନ ଚନ୍ଦ୍ରେ ଶୋଭନ
ସେବ ନ ପାରିଲୁ ତାହା କହୁଅଛି ।୧।
ଫୁଲ ଫୁଙ୍କା ସ୍ୱଭ ଧଇଲୁ ହେଟଲେ,
ସଡ଼ିଲୁ ଅସାଧୁ ଜନଙ୍କ ମେଳେ,
ଭୁଲଇବ କଏ ତୋ ମାନସ ବେଳେ
ବୃଥାରେ ଗୃହର ଦେଖାଉ ଏତେ ।୨।
ଫୁଲମାଳି ତୋର ନିଜ ସଙ୍ଗାଳି,
ନ ଜପିଲୁ କ୍ଷଣେ ହୋଇ ଜଞ୍ଜାଳି,
ଫୁଲରଚନ୍ଦୁ ଯୁଗଳ ପାଦତଳ
ମଞ୍ଜାଳିଲେ ଯାନ୍ତୁ ଉତ୍ତମ ପଥେ ।୩।
ଦ୍ୱୈଳ-ପଶା ଦଣେ ନ ଧର ଆଜ,
ବେଢ଼ୁ ଅଗ୍ରେ ଭର ଶ୍ରୀ ମହାବାହୁ,
ଧୂଳଇ ଧୋଇ ଗୃହର ପିଣ୍ଡା ଥାଉ
ବୃନ୍ଦାବନ ଧନ୍ଦେ ନ ନେବୁ ସାଥେ ।୪।
ଭୁଲ ମାଟିଆକୁ ଦୁଇଠା ନେଇ,
ଯିବ ତୋର ଶବ ମଶାଣୀ ଭୂଇଁ,
ବୁଲଇ କିବାର ଯୁଝରେ ଲଢବେ
ଖୁଣ୍ଟିଣା ତାଙ୍କରେ ବେଣ୍ଟିବେ ବେତେ ।୫।
କି ଲଭ ପାଇବୁ ତନ୍ତ୍ରଙ୍କୁ ଅବା,
ମୋ ବୋଲ ମାନି ଭର ଗୁରୁସେବା,
ଫୁଲଇ ତୋ ଦୂର ସ୍ୱର୍ଗେ ବଇକୁଣ୍ଠ
ଜାଣି ବୁଝି ଜାଗ ଭାବଣ ବ୍ରତେ ।୬।

# ମନଶିକ୍ଷା

୨୦—( ଭଜ ଭଜ ମନ ଗୌରାଙ୍ଗ ଚରଣ—ବୃନ୍ଦେ )

ଅସାର ସଂସାର ହରିନାମ ସାର
ବିଷୟ ବୈଭବ ମିଥ୍ୟାରେ ।
ନୟନ ବୁଜିଲେ ଅନ୍ଧାର ଘୋଟିବ
ଭ୍ରମି ହେବୁ ମିଛା ବୃଥାରେ । ଘୋଷା ।
ଜଳବିମ୍ବ ପରି ଆୟୁଷ ତୋହରି
ଜାଣିଥା ପାଗଳା ମନରେ ।
ପୁତ୍ର ପରିବାର କେ ନୁହେ କାହାର
ସବୁ ସ୍ୱପନ ସମାନ ରେ ।୧।
ବେଳ ଥାଉଁ ବନ୍ଧ ନ ବାନ୍ଧିଲୁ ଅନ୍ଧ
ହେଳାରେ କାଟିଲୁ କାଳରେ ।
ମାୟା ମୋହେ ପଡ଼ି, ନିତ ପ୍ରତି ଘଡ଼ି
ରହିଲୁ ମଜ୍ଜି ଜଞ୍ଜାଳରେ । ୨ ।
ଆତ୍ମୀୟ ସ୍ୱଜନ ଯେତେ ଅନୁକ୍ଷଣ
ବାସାଇଛୁ ଭବ ମେଳାରେ ।
ଭାଗ୍ୟ ରବି ତୋର ଅସ୍ତ ହୋଇଗଲେ
ପାଇବୁ କି ଭଲ ବେଳାରେ । ୩ ।
ଏବେ ହେଜୁ କର ଗୌରାଙ୍ଗ ଶ୍ରୀହରି
ଚରଣେ ଲଗାଅ ଲୟରେ ।
ବୋଲେ ଦୀନ ହୀନ ବଳଭଦ୍ର ଦାସ
ହଟିଯିବ ଭବ ଭୟରେ । ୪ ।

---

## ପ୍ରାର୍ଥନା

୬୧—( କ ପ୍ରେମ ଆଣିଛୁ ଗୋରା—ବୃନ୍ଦେ )

ଏତିକ ପ୍ରାର୍ଥନା ପ୍ରଭୁ ! ତବ ଶ୍ରୀଚରଣେ ହେ ।
ଦୟାକର ଦୟାମୟ ଏ ଅଧମ ଜନେ ହେ । ୧ ।
ସାଧୁ ସଙ୍ଗେ ହରି କଥା ରସେ ନେବ ମନ ହେ ।
ନ ଛାଡ଼ିବି ଶ୍ରୀଗୁରୁଙ୍କ ଶ୍ରୀପଦ ନଳିନ ହେ । ୨ ।
ଯହିଁ ଥିବେ ତୁମ୍ଭ ପ୍ରିୟ ବୈଷ୍ଣବ ଗୋସାଇଁ ହେ ।
ତାହାଙ୍କ ଗୋଲାମ ସଣେ ଯାଉଥିବି ଧାଇଁ ହେ । ୩ ।
ତୁମ୍ଭର ମୁଁ ନିତ୍ୟଦାସ ଏହା ଏହା ନ ଭୁଲିବି ହେ ।
ମାୟା ପିଶାଚୀ କେବେ ନ ପଡ଼ିବି ହେ । ୪ ।
ଆସିଅଛି ଏକା ହୋଇ ଯିବି ପୁଣି ଏକା ହେ ।
ପଥକୁ ରହିଛି ଏକମାତ୍ର ତୁମ୍ଭେ ଶାଖା ହେ । ୫ ।
ତେଣୁ ତୁମ୍ଭ ନାମ କ୍ଷଣେ ନୋହିବ ପାଶୋର ହେ ।
କୃପା ଦୃଷ୍ଟି ଏ ଦୀନରେ ଥାଉ ନିରନ୍ତର ହେ । ୬ ।
ଜୀବନ ସମ୍ବଳ ମୋର ତୁମ୍ଭ ଯଶ ଗୁଣ ହେ ।
ଗାଉଥିବି ଧ୍ୟାଉଥିବି ଅଭୟ ଚରଣ ହେ । ୭ ।
ପତିତ ପାବନ ଗୌରହରି ବିଶ୍ୱମ୍ଭର ହେ ।
ଏହୁ ଭିକ୍ଷା ଶ୍ରୀଛାମୁରେ ବୈଷ୍ଣବ ଦାସର ହେ । ୮ ।



## କଣାଣ

୭୨—( ବନ୍ଧୁ ଅସ ବନ୍ଧୁଆସ—ବୃନ୍ଦେ )

କରୁଣାବରୁଣାଳୟ । ମୋ ଦେଲକୁ ଚାହିଁକ ନିର୍ଦ୍ଦୟ ହେ । ଘୋଷା ।
ଅରୁଣାବ୍ଜ ପଦେ ଶରଣାଗତ ମୁଁ କମା ନ ଦଅ ଅଶ୍ରୟ ହେ ।
ତରୁଣାଙ୍ଗୀ ରାଧା ହୃଦୟ ସମ୍ପତ୍ତି ତୁଟାଅ ମୋ ଭବଭୟ ହେ । ୧ ।

ସବୁ-ଜଟିଆ ଡରୁଛ ଅବା ଦେଖି ମୋର ଏ ଚପଳ ଚସ୍ତୁ ହେ ।
ଗଛୁ ଲଟିବାରୁ ବିଷୟ କଣ୍ଟାଳ ଫଗଣ ହୁଏ ଅଥୟ ହେ । ୬ ।
ଝଟୁଛୁ ନୟନ ଅନୁତାପମାର ତନ୍ତ୍ର ଯାଜନ୍ତୁ ହୃଦୟ ହେ ।
ନଜୁଟଇ କଣ୍ଠୁ ତୁମ୍ଭ ନାମ ବଚନେ ବ୍ୟର୍ଥେ ଯାଏ ମୋ ସମୟ ହେ ।
ଘଟୁ ବାହାରନ୍ତୁ ଝୁଲମାଳା ଧର ଶ୍ରୀଚରଣେ କର ଲୟ ହେ ।
ଧରୁ ଧରୁ ଭୁବନ୍ତେ ଭବନାମ ଦଣ୍ଡେ ଦୁଃଖ ହୁଅଇ ଜଦୟ ହେ । ୮ ।
କରୁଛୁ କଣାଣ ଆହେ ଅଭିମାନ ଆତଙ୍କ ମୋ କର କ୍ଷୟ ହେ ।
ପତିତ ଅଧମ ବୈଷ୍ଣବ ଦାସକୁ ବାଧା ନ ଦେଇ ବିଷୟ ହେ । ୯ ।

—o—

## ମନଶିକ୍ଷା

୨୭—(ସତେ ମୋତେ ଗୁରୁଙ୍କର ଆଜ୍ଞା ହେବ—ବୃତ୍ତ)

ଧନ ମଦେ ମନ ହେଉ ଛନ୍ନ ଛନ୍ନ ଅନବରତରେ କାହିଁକି ?
ଜନପଶୁଠାରୁ ହୀନ ହୋଇଅଛୁ ଅଗ୍ନି ବେତେ ଦିନ ପାଇଁକି ? ଘୋଷା ।
କନମ ଲଭିଲୁ ମାନବ ଦେହରେ ସେଠାରେ ତୁ କସ କହୁକି ?
ଅନଙ୍ଗୀର ଖାଇ ମାୟାରେ ଭୁଲାଇ ପାସୋରି ଦେଇଛୁ ତୁହିକି ? । ୧ ।
ଘନ ଘନ ହୁତା ଆସିବ ବେଳରେ କେବା ସାହା ଅଛୁ ତହିଁକି ?
ଜନମାନେ ଭଲ ବୋଲିବେ ଯେପରି ତାହା ଗୁରୁ କହୁ ନାହିଁକି ? । ୨ ।
ତନମୟ ହୋଇ ଶ୍ରୀନାମ ସଙ୍ଗୀଳ କର ଲଭ ଭବୁଁ ହାହିକି ।
ସନକାଦି ମୁନି ଯାହାଙ୍କୁ ଜପନ୍ତି ଚିନ୍ତ ତୁ ସେ ସ୍ୱବଗ୍ରାହୀକି । ୩ ।
କନକ ବରନ ଶ୍ରୀଗୌର ମୋହନ ସଜୀବ ଚରଣ ଦୁହିଁକି ।
ଅନଳ ସ୍ୱପବେ ଭଜ ତୁ ନରତେ ବୈଷ୍ଣବ କହେ ବୁଝାଇ କି । ୪ ।

—*—

## ସେବା ପ୍ରାର୍ଥନା

୬୪—( ଭଜ ଭୂଲଲ୍ ତା ପ୍ରୀତରେ ପ୍ରାଣ ସଙ୍ଗିନ—ବୃତ୍ତେ )

ମିଳବକ ସେବା ଧନ ହେ, ଶଚୀ ନନ୍ଦନ ! । ଘୋଷା ।
ଦୀକ୍ଷା ଶିକ୍ଷା ଦନୁ ହରି, ଶ୍ରୀ ଗୁରୁ ଆଜ୍ଞାକୁ ଧରି,
ହୋଇଛୁ ତୁମ୍ଭ ଅଧୀନ । ୧ ।
ଏ ଗୃହ କଞ୍ଜାଳେ ଅଶ, ନାହିଁ ମୋର ପୀଡବାସ
ଶ୍ରୀପଦେ ବକଛୁ ମନ ହେ । ୨ ।
ପ୍ରେମଭକ୍ତି ପଥେ ମୋତେ, ପଥିକ କର ସନ୍ତତେ,
ଏହୁ ମାତ୍ର ନିବେଦନ ହେ । ୩ ।
କହେ ବଇଷ୍ଣବ ଦାସ, ବ୍ରଜଧାମେ କର ବାସ,
( ସତେ ) ଗୁନ୍ଥିବ ଲଟି ସୁମନ ହେ । ୪ ।

—o—

## ବିପଦ ପଣ୍ଡୁ

୬୫—( କ ନାମ ହୋଇଲ ତୁହ ଗୋ ଲଳତେ—ବୃତ୍ତେ )

ସେ ଜୀବନେ କେଉଁ କାର୍ଯ୍ୟରେ ସଙ୍ଗାତ !
ସେ ଜୀବନେ କେଉଁ କାର୍ଯ୍ୟ ।
ଯାହାର ନୟନ ନ କଲ ଦର୍ଶନ
ଗଉର ମୁଖ ପଙ୍କଜ ରେ । ୧ ।
ସେ ଦେହରେ କବା ସୁଖରେ ସଙ୍ଗାତ ।
ସେ ଦେହରେ କବା ସୁଖ ।
ଢାଳିକି ନନ୍ଦକ ଦାମ୍ଭିକ ନାସ୍ତିକ
ଯେହୁ ଗୌର ଚନ୍ଦ୍ରମୁଖ ରେ । ୨ ।

ସେ କର୍ଣ୍ଣରେ କବା           କଡରେ ସଙ୍ଗାତ ।
ସେ କର୍ଣ୍ଣରେ କବା ଲଭ ?
ଶ୍ରୀଗୌର ଗୋବିନ୍ଦ           ନାମ ମକରନ୍ଦ
ଯାହାକୁ ହେଳ ଦୁର୍ଲ୍ଲଭ ରେ । ୩ ।

ସେ ଜିହ୍ୱାରେ କେଙ୍ଗ           ଫଳରେ ସଙ୍ଗାତ ।
ସେ ଜିହ୍ୱାରେ କେଙ୍ଗୁଫଳ ।
ଗୌରଙ୍କ ଅର୍ପିତ           ଯେ ଅଧରାମୃତ
ଅସ୍ୱାଦନେ ଯେ ଦୁର୍ବଳ ରେ । ୪ ।

ସେ ନାସା ଥାଇ କ           ହେବରେ ସଙ୍ଗାତ
ସେ ନାସା ଥାଇ କ ହେବ ।
ଗୌରଅଙ୍ଗ ବାସି           ଚନ୍ଦନ ତୁଳସୀ
ଆଘ୍ରାଣ ଯେ ନ କରିବ ରେ । ୫ ।

ସେ ହସ୍ତ ଥାଇ କ           କେଡ଼ାରେ ସଙ୍ଗାତ
ସେ ହସ୍ତ ଥାଇ କ କେଡ଼ା ?
ଗୌର ନାମ ମାଳା           ଜପିବାରେ ହେଳା
କରଇ ଯେ ବନ୍ଧୁ କ୍ରୀଡ଼ାରେ । ୬ ।

ସେ ପାଦ ଥାଇ କ           କାମରେ ସଙ୍ଗାତ ।
ସେ ପାଦ ଥାଇ କ କାମ ?
ଗଉର ମଣ୍ଡଳ           ଚିନ୍ତାମଣି ସ୍ଥଳ,
ନ ଭ୍ରମିଲ ଯେ ଅଧମରେ । ୭ ।

ସେ ତୁଣ୍ଡରେ ଅଛୁ           କସ ରେ ସଙ୍ଗାତ ।
ସେ ତୁଣ୍ଡରେ ଅଛୁ କସ ?
ଗୌରନାମ ଗାନେ           ମୋଦ ଯେ ନୋହିଲା
ଜାଣି ଗ୍ରାସ କଲା ବଷ ରେ । ୮ ।

ଏ କଥା ଶୁଣି ଯେ ହସୁଚରେ ସଙ୍ଗାତ।
ଥଣ୍ଟା ଭଙ୍ଗୀ କର ଖସ୍ତ ।
କହେ ବଇଷ୍ଣବ ନର ଦେହ ଧର
ସେହୁଟି ଦ୍ୱିପଦ ପଶୁ ରେ । ୯ ।

—❀—

## ସ୍ୱାଭିଷ୍ଟ ଲାଳସା

୬୭—( ହରି ହରି କବେ ହବ ବୃନ୍ଦାବନ ବାସୀ—ବୃତ୍ତେ)

ଶ୍ରୀ-ଗୁରୁ ଗୌରାଙ୍ଗ କେବେ କରିବେ କରୁଣା ।
ଗ୍ର-ଜମାର୍ଗେ ଧନ ନେବ ହୋଇଣ ଫକୁଣା । ୧ ।
ଧା-ର ଧାର ବହୁଥିବ ନେତ୍ରୁ ପ୍ରେମବାରି ।
ମ-ଞ୍ଜରୀ ସ୍ୱରୂପ ନିଜ ଅଙ୍ଗେ ଥିବ ଧରି । ୨ ।
ବ-ଣ୍ଡାତ ର ଲୀଳା ସ୍ମରିଥିବ ଅନୁକ୍ଷଣେ ।
ନ-ଜିବ କୁପଥେ କଦା ଥିବାଯାଏ ପ୍ରାଣେ । ୩ ।
ମୋ-ଦ ମନେ ପଦ ରଚୁଥିବ ହରି କଥା ।
ହ-ସୁଥିବ କାନ୍ଦୁଥିବ ଗାଇ ଗୁଣ ଗାଥା । ୪ ।
ନ-ତ୍ରିନ କରିବ କୀର୍ତ୍ତନୀୟାଙ୍କ ସଙ୍ଗରେ ।
ଲ-ଜ୍ଜିତେ ନ ଦେବ ମନ ତାମସା ରଙ୍ଗରେ । ୫ ।
ଜ-ପି ଜପି ଇଷ୍ଟମନ୍ତ୍ର ଧାରିବି ଜୀବନ ।
ଏହୁ ଆଶା କରେ ଦାସ ବଇଷ୍ଣବ ହୀନ ।୬। *

———

* ଏହୁ ଗୀତର ପ୍ରତି ପାଦ ପ୍ରଥମ ଅକ୍ଷରମାନ ପାଠ କଲେ ଯୁଗଳ-ନାମ ଭଜନ ଅର୍ଥ ବାହାରିବ ।

## ମନଃଶିକ୍ଷା

୨୭— ଅଗୋ ଚନ୍ଦ୍ରାବଳୀ କୁଞ୍ଜ ମନେ ଯଜି—ରୂପକ )

କି ଘୁର ସୁଖରେ ଭୁଲିଛୁରେ ମନ ଭ୍ରଷ୍ଟରେ ପାଶି ହୋଇ ।
ଇଚ୍ଛାମୟ ହରି ନଦୀୟା ଚନ୍ଦ୍ରାଙ୍କ ନାମ ନ ଭଜୁ କିମ୍ପାଇଁ ? ।
ଶ୍ରୀ ଛାମୁରେ ରହି
ଜଣାଅ ଚେତା ଦୁଃଖ ହେବୁ ବାହି । ୧ ।

ଭଜ ସାଧୁସଙ୍ଗ ଶୁଦ୍ଧ ହେବ ଅଙ୍ଗ ଛାଡ଼ ବନ୍ଧୁ-ରଙ୍ଗ ମେଳ ।
ଗୃହଁ ଗୃହଁ କାଳ ନଷ୍ଟ ହେଉଛୁ ଆଉ ନାହିଁଟିରେ ବେଳ ।
ଶଚୀ ଗୌରହରି
ଏ ଭବ ସାଗରୁ ଯିବୁ ତରି । ୨ ।

ଶ୍ରୀଗୁରୁ ଆଦେଶ ପାଳ ଅହର୍ନିଶ ନ ହୁଅ ଏଥି କୃପଣ ।
ଜଳ ବିମ୍ବ ପରି ଆୟୁଷ କଟାହର ଚେତ ଏ ବଡ଼ମାପଣ ॥
ମହାମନ୍ତ୍ର ଜପ
ଦୂରୁ ପଳାଇବ ତିନି ତାପ । ୩ ।

ବଡ଼ ଦୟାମୟ ଶ୍ରୀଶଚୀ ତନୟ ପତିତମାନଙ୍କ ବନ୍ଧୁ ।
ଗତି ଦାତା ହୋଇ ଆଉ କେହୁ ନାହିଁ ଏକା ଜାଣେ ବ୍ରଜବଧୂ ॥
ତାଙ୍କୁ ଆଶ୍ରେକର
ଫେରେ ନ ହୋଇବୁ ହରବର । ୪ ।

ଅନିତ୍ୟ ସଂସାର ମିଥ୍ୟା ଭାରବାର ଲଗିଛି ମାୟାର ନାଟ ।
ଧନ୍ୟ ନେଜ ଫେର ଦେଖ କିନା ରୁହୁ ଦର୍ଶିବ ନିର୍ମ୍ମଳବାଟ ॥
କୃଷ୍ଣ ରସେ ରସ
କହେ ଦୁଃଖୀ ବୈଷ୍ଣବ ଦାସ । ୫ ।



## ନଦୀୟା ଯାତ୍ରା

୬୮—( ହରି ବୋଲ ଆମାର ଗଉର ନାଚେ—ବୃନ୍ଦେ )

ଚାଲ ଯିବାରେ ଭାଇ । ନଦୀୟା ଦେଶେ । ଘୋଷା ।
କି ସୁଖ ଅଛୁରେ ଆଜ ଏ ଗୃହ ସଂସାରେ ?
ବିଷମୟ ଏ ବିଷୟ ବୁଝି ଯେନ ବାରେ । ୧ ।
ଧନ ଦାର ପୁତ୍ର ନାତି ଭାଇ ବନ୍ଧୁ ଯେତେ ।
ସବୁ ମିଛ ନାମ ସତ୍ୟ ହେତୁ କର ଚିତ୍ତେ । ୨ ।
ପରମ ପଦାର୍ଥ ସିନା ପରମାର୍ଥ ଧର୍ମ ।
ଶ୍ରୀଗୁରୁ ପ୍ରଦତ୍ତ ମନ୍ତ୍ର ଗୋଟି ସାର ମର୍ମ । ୩ ।
ବୈଷ୍ଣବମଣ୍ଡଳୀ ମଧ୍ୟେ ଶ୍ରୀ ସଚ୍ଚିଦାନନ୍ଦ ।
ବିଜୟେ କରି ଅଛନ୍ତି ଗୌର ନିତ୍ୟାନନ୍ଦ । ୪ ।
ଶ୍ରୀବାସ ଅଙ୍ଗଣେ ସଦା ଘଟିଅଛି ଲୀଳା ।
ତାହା ଦେଖିଲେ ପାଶୋରି ଦେବୁ ଗୃହ ଖେଳା । ୫ ।
କି ଅଭାବ ଅଛି ତୋର ଧନ ହେଲ ମନ୍ତୁ ।
ବୃଥାରେ ପରଙ୍କ ଲାଗି ପାପବୃତ୍ତି କରୁ ।
ଛାଡ଼ ଛାଡ଼ ଏ ଦୁର୍ବୁଦ୍ଧି ମିଥ୍ୟା ଅହଂକାର ।
ଗୌର ନାମାବଳୀ ତୋର ହୃଦେ କର ହାର । ୬ ।
ଛିଣ୍ଡାଅ ମାୟାର ଜାଲ କାଟ ମୃତ୍ୟୁ ଡୋର ।
ବଇଷ୍ଣବ ଦାସ କହେ ଯେଣୁ ଦୂର କର । ୮ ।

———

## ନଟନଗୌର

୬୯—( ବଟ୍ଟଦନ ପଟେ ବଣ୍ଟୁୟା ଏଲ—ବୃନ୍ଦେ )

ନଦୀୟା-ବିହାରୀ ନଟନଗୌର ।
ଭକତଙ୍କ ଚିତ୍ତ ସମ୍ପଦ ଚୋର । ୧

ଭାବେ ଗଦଗଦ ଦନ୍ତ କି କଥା ।
ସେ ଜାଣେ ତାର କ ମରମେ ବ୍ୟଥା ।୨।
କ୍ଷଣେ ଉଠେ କ୍ଷଣେ ବସଇ ତଳେ ।
ସ୍ୱଅଇ କ କରି କେତକ ନଳେ । ୩ ।
ସଂକୀର୍ତ୍ତନ ମଧ୍ୟେ ଊର୍ଦ୍ଧ୍ୱକୁ ଚୃହିଁ ।
ବାହିଁକ ଥରଇ କସ ଚହୋଇ । ୮ ।
ନିଜ ପର କିଛୁ ନ ଜାଣେ ସେତ ।
ତାହାଙ୍କୁ ଭାଙ୍ଗେ ପ୍ରସାର ହାତ । ୫ ।
ଉତ୍ତମ ଅଧମ ନ ମାନେ କିଛୁ ।
ବୋଲେ ମୁଁ ସଭଙ୍କି ହୃଦ ବଳିଛୁ । ୬ ।
ଡଳନ୍ତି ସର୍ବଦା ପ୍ରେମ ହିଲ୍ଲୋଳେ ।
ଢଳି ପଡ଼େ ପୁଣି ଭକ୍ତଙ୍କ କୋଳେ । ୭ ।
ପ୍ରେଭୁ ଗଦାଧର କରକୁ ଧରୁ ।
କହେ ମନକଥା ଗୁପତ କରୁ । ୮ ।
ଚରଣ ଯୁଗଳ ବାହିଁକ ଛନ୍ଦେ ।
ହା ହା ପ୍ରାଣବନ୍ଧୁ ବୋଲିଣ କାନ୍ଦେ । ୯ ।
ସୁମର ସୁମର ଗୌରାଙ୍ଗ ସ୍ୱବ ।
ଗତ ଲଭିବ କ ଦାସ ବୈଷ୍ଣବ ? । ୧୦ ।

—*—

## ଅନିତ୍ୟ ସଂସାର

୭୦—( ହରି ତବ ନାଗ ଏତେ ସର—ବୃଢେ଼ )

ଅନିତ୍ୟ ସଂସାର କି ଏହୁ ।
ଜଳ ବିମ୍ବପରି ଜାଣ ସ୍ୱଇ । । ଘୋଷା ।
ଇନ୍ଦ୍ର ଜାଲବର ବୁଦ୍ବୁଦ ମନ୍ତର
ଦେଖୁଥିବ ଧନ ଜନ ।

ସ୍ୱପନରେ ଯଥା ଦୃଶ୍ୟ ନାନା କଥା
ଚେତ ହୁଟିଲେ ସେ ଶୂନ୍ୟ । ୧ ।
ତେଣୁ ମିଛମାୟା ବାଜୀକର ଛାୟା
ଘୋଟିଛୁ କର ଅଜ୍ଞାନ ।
ଧର୍ମ୍ମେନେଣ ପେଣ୍ଡ ଦେଖ କନା ଲେଡ
ଶାସ୍ତ୍ର ପୁରାଣ ବଚନ । ୨ ।
ସଙ୍ଗରୁ କେତେକ ଗଲେଣି ଯେତେକ
ଅଛନ୍ତି ଧର ଜୀବନ ।
ସେ ସବୁଲେ ଯିବେ କେହ୍ନ ନ ରହିବେ
ଲଭିଯିବ ଅପଯନ । ୩ ।
ସୁକର୍ମ୍ମ ଦୁକର୍ମ୍ମ ଯେ ଯାହା ଯେ ଭଲ
କରିଥିବ ଅରଜନ ।
ସେହି ଅନୁରୂପେ ଫଳ ସେ ଲଭିବ
କେବେହେଁ ନୋହିବ ଆନ । ୪ ।
ଗରବ ଗୁମାନ ଦମ୍ଭ ଅଭିମାନ
କରନ୍ତି ଯେଉଁ ଦୁର୍ଜ୍ଜନ ।
ଧରିତ୍ରୀକୁ ସର ସର୍ବଦେ ମଣନ୍ତି
ଦେଖାଇଣ ବଡ଼ପଣ । ୫ ।
ଛରନ୍ନେ କଷ୍ଟ ସବୁ ଅକାରଣ
କାରଣ ଶ୍ରୀ ହରିନାମ ।
ଗଢ଼ିର ଗୋଷ୍ଠ ନ ଭଜେ ଯେ ମଢ
ଧିକ ଧିକ ତା ଜନମ । ୬ ।
ଗୁପ୍ତ କୃଷ୍ଣ ବଇ— ସ୍ତବଙ୍କ ଚରଣେ
ନ ସେବିଲ ଯେ ଅଧମ ।

ବୋଲେ ବାଗାଳିଆ    ବଇଷ୍ଣବ ଦାସ
ଜୀବନ୍ତେ ସେ ମଳ ସମ । ୭ ।

—*—

## ମନଃଶିକ୍ଷା

୭୧—( ଗାଇବ ର ଗାନ—ବୃନ୍ଦେ )

ଭାବକଳା ମନ    କଳମନ୍ତ୍ର ସେ ଧନ
ଯେ ଧନ ଜୀବନ ଯିବରେ ।
ଯେ ଦେହକୁ ଏତେ    ଯତନ କରୁଛୁ
ସେତ ଖାଲ ପଡ଼ିଥିବରେ ॥

( ଘୋଷା )

ଧନ ପୁତ୍ର ଦାର ତୋ ବନ୍ଧୁ ବାନ୍ଧବ,
କେ ନୋହିବେ ତୋର ନିମିଷେ କ ଲବ,
ଏହି ମାଟି ପିଣ୍ଡ ମାଟିରେ ମିଶିବ
ଜନାଏତ ନ ରହିବରେ । ୧ ।

ଅରଜିଛୁ ଯେତେ ସୁକୃତ ଦୁଃଷ୍କୃତ,
ଶେଷରେ ସକଳ ଜଣା ପଡ଼ିବତ,
ଯମ ଦରବାରେ ଚିତ୍ରଗୁପ୍ତ ଗାଣ୍ଠି
ପଢ଼ି ସବୁ ବୁଝାଇବ ରେ । ୨ ।

ବେଳଥିଁ ଶ୍ରୀହରି ନାମ ନ ଧରିଲୁ
ମାୟା ମୋହେ ପଡ଼ି ବାୟା ତୁ ହୋଇଲୁ,
ବିଷୟ ମଦକୁ ଛାଡ଼ି ନ ପାରିଲୁ
ପଡ଼ନ୍ତେ ଭବ୍ରେ କ୍ଷୋଭ ରେ । ୩ ।

ତୋଳାଇଛୁ ଯେଉଁ ଜଳ ଘର ଗୋଟି,
ସେ ଥିବ ତୁ ଯିବୁ ଅବମା ସାଇଁ ଟି,

ଭାଳ ଅସି ଯେନପିର ଧର ବୃତ୍ତି,
ଭେକଧ ଦେବ ପରିଭବରେ । ୪ ।
ଭକ୍ତଙ୍କୁ ଏଭଳି ଭଉଥାଅ ହେଲେ,
ସାଧୁଶାସ୍ତ୍ର ଗୁରୁବାକ୍ୟକୁ ପାଳିଲେ;
ହଟିର ଦୁଦଶା ଦୂରରୁ ଦେଖିଲେ,
କହେ ଦାସ ବଇଷ୍ଣବରେ । ୫ ।

—o—

## ଗୌରାଙ୍ଗ ବିରହ

୭୨—( ଗୋକୁଳ ନଗରେ ପ୍ରତି ଘରେ ଘରେ—ବୃନ୍ଦେ )

ନଦୀୟା ବଜାରେ ଚହଲ ପଡ଼ିଛି ନିମାଇଁ ସନ୍ନ୍ୟାସ କଥା ।
ଦେଖିବାର ଥାଉ ଶୁଣିଲା ମାତ୍ରକେ ଲାଗେ ମନେ ମହା ବ୍ୟଥା ହେ ।
କେ ବୋଲେ କି ହେଲା ଏ ହରିନେଲା ଗଉର ଗୁଣର ମଣି ।
କାନ୍ଦିନ ବିଳାସୀ ନବଦ୍ୱୀପ ଶଶୀ କେତେ ଦୁଃଖ ଦେଲେ ଆଣି ।୨।
ଆଉକି ଶୁଣିବା ସେ ମଧୁର ଭାଷା ଆଉକି ଦେଖିବା ଗୋରା ।
ଆଉକି ଦେଖିବା ହୃଦୟ ପଟରେ ସେରୂପ ମାଧୁରୀ ଭରା ।୩।
କେ ବୋଲଇ କି ଯେ ଗୌର ପ୍ରେମାନନ୍ଦୀ ଭକ୍ତେ କି ବଞ୍ଚିବେ ସହି ।
ବିରହ ଜ୍ୱଳଣ ସହି କେବା ପ୍ରାଣ ରଖିବ ଧରି ଏ ଦେହି । ୪ ।
କେ ବୋଲେ ଗୋ ମିଛ କେତେ ଉଚ୍ଚାଇବ ପଣ କଲେ ଶଚୀବାଳା ।
ଜହର ନ ଦେଇ ଗଲେ କାହିଁ ପାଇଁ ଖୋଳିନେଲେ ଯାହାଡ଼ୋଳା ।
କେ ବୋଲେ ଅସ ଗୋ ଅନଳ ଜଳାଇ ଝାସିବା ତହିଁରେ ଯାଇଁ ।
ଏ ନାହିଁ ଜ ପ୍ରାଣ ଥିବ କି କାରଣ ଗଉର ବିରହ ସହି । ୬ ।
କେ ବୋଲେ ପାଷାଣେ ମଥା କୋଡ଼ି ହୋଇ ଛେଚିବା ଏ ଛାରପ୍ରାଣ ।
ଗୌର ଲାଗି ମଲେ ନଦୀୟା ନାଗରୀ ବୋଲି ରହୁ ଏହୁ ଠାଣ ।୭।
ଏହୁପରି ଥୋକେ ବୁଡ଼ଣ ଲୋକଙ୍କେ ହେଉଛନ୍ତି କୁହା କୁହି ।
ଅଧମ ବୈଷ୍ଣବ ଦାସକୁ ଦୁର୍ଲଭ ଶ୍ରୀଗୌର ଚରଣ ଦୁଇ ।୮।

———

## ଗୌର ଭଜନ

୬୩—( ମଙ୍ଗଳପଦ୍‌ ପଣ୍ଡ ଏ ଛୋର ନୟନ—ବୃନ୍ଦେ )

ଭଜ ତୁ ରେ ମନ ଶ୍ରୀ ଗୌର ମୋହନ;
ଅଭୟ ଚରଣାରବିନ୍ଦରେ ।
ଯାହା ଚନ୍ଦ୍ର ବନ୍ଧୁ, ଶ୍ରୀଗୁରୁ ଗୋସାଇଁ;
ହସି ହସି ପ୍ରେମାନନ୍ଦରେ । ୧ ।
ସେହୁ ଗୁପ୍ତ ଧନ, ଅମୂଲ୍ୟ ରତନ;
ସଂସାର ମଧ୍ୟରେ ସାରରେ ।
ନ ହଜାଇ ତାହା, ବଢ଼ାଇ ଯତନ;
ଭରିଥାଅ ହୃଦ ଭାବରେ । ୨ ।
ନେବେ ନାହିଁ ଘାଇ, ଚୋ ପାଶୁ ଛଡ଼ାଇ;
ନେବେ ନାହିଁ ବୈର ଖଣ୍ଡରେ ।
ଦରବାର ବେଳେ, କାର୍ଯ୍ୟରେ ଆସିଲେ;
ଦେଖିବୁ ଜନ୍ମ ବାଟରେ । ୩ ।
ଏ କଳି ଯୁଗରେ, ହରେ କୃଷ୍ଣ ହରେ;
ଯେ ଚଇତନ୍ୟ ପ୍ରଭୁବରେ ।
ସେ ଯେ ଦୟାନିଧି, ଦେବେ ସର୍ବସିଦ୍ଧି,
କହେ ବଇଷ୍ଣବ ଘରରେ । ୪ ।

---

## ଗୌରାଙ୍ଗ ଲୀଳାବିଳାସ

୭୦—( ବରଦାହୃଦା ଘଟାଙ୍କୁ—ବୃତ୍ତେ )

ଗୌରାଙ୍ଗ ସୁନ୍ଦର, ନଟ ପୁରନ୍ଦର,
ଶ୍ରୀବାସଙ୍କ ଅଗଣାରେ ।
ଯେ ଯବେ ଶ୍ରୀଚନ୍ଦ୍ର, ଲୀଳା ପ୍ରକାଶିଲ;
ସଂକୀର୍ତ୍ତନ ପ୍ରସଙ୍ଗରେ ହେ । ୧ ।

ଶ୍ରୀମୁକୁନ୍ଦ ଦତ୍ତ, ସଞ୍ଜୟ ସହିତ;
ରଚକ ଶ୍ରୀ ବାସୁଦେବ ।
କଲେ ଅଳାପନ, ମଧୁର କୀର୍ତ୍ତନ,
ଦେବଙ୍କୁ ଯାହା ଦୁର୍ଲ୍ଲଭ । ୨ ।
ଚନ୍ଦ୍ର ଗଦାଧର, ଅଗ୍ରଣୀ-ଠାକୁର
ସେ ପ୍ରେମ ମାଦକ ଖାଇ ।
ଶ୍ରୀରାଧିକା ବେଶେ, ମାନସ ଉଲ୍ଲାସେ,
ନେଇ ଭୋଳା ଉଲଟାଇ । ୩ ।
ଶ୍ରୀଶଚୀ ନନ୍ଦନ, ବିଳାସେ ମୋହନ;
ଅଭିନୟେ ଠାଉ ଭଣି ।
କୀର୍ତ୍ତନ ମଣ୍ଡଳେ, ଭ୍ରମି ଭ୍ରମି ପୁଣି;
ଲୀଳା ବିସ୍ତାରିଲେ ଜାଣି । ୪ ।
ସଂକ୍ଷିପ୍ତ ସମ୍ପନ୍ନ, ମିଶ୍ରିତ ସମ୍ଭୋଗ,
ରସକଲେ ବରଷଣ ।
କରତାଳ ବାଇ, ନାଚେ ଯାଳ ଗାଇ,
ଦାସ ବୈଷ୍ଣବ ଚରଣ । ୫ ।

—*—

## ନଦୀଆ ନାଗରୀ ଉକ୍ତି

୭୫—( କାଣ୍ଡେ ସେହି ନନ୍ଦସୁତ ଅଛଇ ମୂର୍ତ୍ତି—ବୃନ୍ଦେ)

ଅ—ସଗୋ ସହି ସଙ୍ଗାତ ପଗଣ ମିତ ।
ସ—କଲେ ମିଳ ଗାଇବା ଗଉର ଗୀତ । ୧ ।
ଗୋ—ପ କୁଳଚନ୍ଦ୍ର ଗୋପୀନାଥ ମୋହନ ।
ସ—କଳଙ୍କ ମୁଖୀ ରାଧା ଜୀବ ଜୀବନ । ୨ ।

ସ୍ୱ—ଭ ପାଖୁ ଯାନସ୍ଥାନ ପଣ୍ଡିତଙ୍କର ।
ସଂ—କୀର୍ତ୍ତନ ଛଳେ କରେ ଜୀବ ନିସ୍ତାର । ୩ ।
ଗା—ଦ ଗୋଷ୍ଠିଯାକେ ପୂର୍ଣ୍ଣ ଅଷ୍ଟ ସାତ୍ତ୍ୱିକ ।
ଉ—ଦୟ ଭାବରେ ନେତ୍ରୁ ଝରେ ଲୋତକ । ୪ ।
ପ—ଣ୍ଡିତ ନିମାଇଁ ବୋଲି କହନ୍ତି ଯାକୁ ।
ବ—ଇରଣେ ଋଣୀ ସେ ଅସିଛୁ ଏଠାକୁ । ୫ ।
ନ—ବାରେ ଆପଣ ପର ସଭିଙ୍କି ଧରୁ ।
ମି—ଶାଇଛନ୍ତି ବକ୍ଷେ ନେଇ ସ୍ନେହେ ଆଦରୁ । ୬ ।
ଉ—ପାଙ୍କ ସର୍ବସ୍ୱ ପାପୀ ତ୍ରାଣ କରତା ।
ଆଦ୍ୟ ଅକ୍ଷରେ ବୈଷ୍ଣବ ଦାସର ଚିନ୍ତା । ୭ ।



## ମନଃଶିକ୍ଷା

୭୨—(ରସ ରସିକ ହେ, ରଖ ଏ ଚମ୍ପକ ଦ୍ୱାରକୁ—ବୃନ୍ଦେ)

ମୂଢ଼ ମାନସରେ, ଦୃଢ଼କର ଗୌର ନାମକୁ । ଘୋଷା ।
ଗୂଢ଼ ମହାମନ୍ତ୍ର ଷୋଳ ନାମ ବତ୍ରିଶ ।
ଛଅରୁ ହୋଇଛି ସେ ବତିଶଅକ୍ଷର ।
ନିରତେ ତାହା ଘୋଷ ନ କର ତୁ ଅଳସ
ଅସାଧୁ ସଙ୍ଗ ତ୍ୟଜ, ସାଧୁଙ୍କ ସଙ୍ଗେ ବସ,
ହୃତ ହେଜୁଛୁ ଜସ, କେତେବେଳ ଅପୂପ,
ନ ଚିନ୍ତୁ ଏହା ଯାମ ଯାମକୁ । ୧ ।
ଗଣି ଗଣି ଯେତେ ଧନ ଅଳ୍ପୁରେ ଥୋଇ,
ଗଣ୍ଠିରି ଭର ତା ସବୁ ନେବୁକି ବନ୍ଧୁ ?
ଗଜ ମୁକୁଷ ହେଲ୍ଲ, ଗାଢପଣା ତୁ ଉଲ୍ଲ
ଗଞ୍ଜି ହୋଇ ତୁ ମଲ୍ଲ, ଗୁରୁ ଆଜ୍ଞା ଲଙ୍ଘିଲ
ଗତ ଦ ତା ଶ୍ରୀହରି ନାମତ ନ ଚିନ୍ତିଲ,
ପ୍ରବେଶ ହେଲ୍ଲ ନିଜ ଧାମକୁ । ୨ ।

ଦାଣ୍ଡକୁ ଦେଖାଇ ହେଳ ଛଇ ଛଟକ,
ଷଣ୍ଡ ବୃତ୍ତରେ ହୋଇଲ୍ ହତା ଅଟକ,
ଵାଣ୍ଡ କୋଦଣ୍ଡ ଧର, ପାଣ୍ଡବଙ୍କ ସୋଦର,
ତାଣ୍ଡବ ନୃତ୍ୟକାରୀ, କିବ ଯା ବୋପୁର
ଗୃଣ୍ଡରେ ତାଙ୍କୁ ଭଜ ନୁହ ଅନ୍ଧ ବଧୀର,
ତୁଣ୍ଡ ନ ଛାଡ଼ୁ କୃଷ୍ଣ ନାମକୁ । ୩ ।

ବାନେ ବାନେ ବହୁଛନ୍ତି ଗଗୁରୁ ଯାହା,
ଧାନେ ପାଶୋର ନ ପଡା ଏଣିକ ତାହା
ଅନେ ନ ବଲା ଅଶ, ଦାନେ ଦୁଃଖିଙ୍କି ତୋଷ
ମାନେ ଯେ ପଙ୍କରୁଷ, ସାନେ ବୋଲନ୍ତି କଷ,
ଭାନେ ବୈଷ୍ଣବ ଦାସ, ପାନେ ନାମ ପିୟୁଷ,
ଗୃଖ ବହୁଛି ଫେର ଧାମକୁ । ୪ ।

---

## ଜଣାଣ

୭୨—( ମହାବାହୁ ! ଏହୁ ବଥରେ ମୋ ମନ—ବୃତ୍ତେ)

ଦୀନବନ୍ଧୁ ! ମୋ ଦୁଃଖ କହିବ କାରେ ?
ଦୁଃଖୀ ସୋଦର ହେ— କରୁଣା ସାଗର
ତୁମ୍ଭେ ଜଣେ ଥିବାଠାରେ ହେ । ଘୋଷା ।
କେତେ ବା କାହାର ଡାକ ଶୁଣି ନାହିଁ
ତବ ଶ୍ରବଣ ସୀମାରେ ।
ଏତେ ଅବହିତ ମୁଁ କିଣରେ ମାତ୍ର
ନାଥ କେମ୍ଭେ ହନ ସାବେ ହେ । ୧ ।

ବାରଣ-ତାରଣ ପଶୁ ବନ୍ଧୁଗଣ
ଦେଖାଇଛ ସୁଦାମାରେ ।
ଅଚଳା ସମ୍ପତ୍ତି ଦେଲ ଯଦୁପତି
ସଙ୍ଗୋଳା ଖୁଦ ମୁଠାରେ ହେ ।୨।
ହରଣୀ ଦୁର୍ଦ୍ଦଶା ଫେଡ଼ିଲ ସହସା
ଅଛକେ ସେ ଡାକବାରେ ।
ଦ୍ରୁପଦ କୁମାରୀ ଆର୍ତ୍ତେ ଡାକୁ ହରି
କୋଟି ବସ୍ତ୍ର ଦେଲ ତାରେ ହେ ।୩।
ଏରୂପର କେତେ ପ୍ରାଣୀଙ୍କି ରଖିଛ
ଦୁଃଖୁଁ ଭକ୍ତର ଶ୍ରଦ୍ଧାରେ ।
ହତଭାଗା ଜଣେ ମୋ ପରି ନ ଥିବେ
ଖୋଜିଲେ ଏ ବସୁଧାରେ ହେ ।୪।
ଭବଗ୍ରାହ୍ମ ନାଥ ଲବଣ୍ୟ ମୂରତି
ତୁମ୍ଭ ଅଟଇ ବଶ୍ୟରେ ।
ହେ ଶଚୀନନ୍ଦନ ଯିବ କି ମୋ ଦିନ
କେବଳ ଲୁହ ଗୋଳ୍ପରେ ହେ ।୫।
ଉତ୍କଣ୍ଠ ଜଣାଣ ଜୁଡ଼ପାଉ ପ୍ରାଣ
ତବ ଶ୍ରୀପଦ ସେବାରେ ।
ବଇଷ୍ଣବ ଦାସ ନ ହେଉ ନିରାଶ
ମହିମା ଭଣ୍ଡାର ଦ୍ୱାରେ ହେ ।୬।



## ମନଃଶିକ୍ଷା

୭୮—( ଭଜ ମନରେ, ଭଜ ଜଗା ଜଗନ୍ନାଥଁ—ବୃନ୍ଦେ )

ଜାଲ ନୁହରେ ଭୁଲ, ପାଗଳା ମନ !
ଖାଲରେ ନ ପଡ଼ ଥାଉଁ ନୟନ । ଘୋଷା ।

ପାଲ୍‌ରେ ପକାଇ ମାୟା ଦୃଢଶକ୍ତି,
ଜଗଇ ଦେବରେ କ ସ୍ଥାନମାନ ।
ଜାଲ ବସାଇଛି ସେ କାଳ ଧୀବର
ଜାଣି ଜାଣି ତହିଁ ନୁହ ପତନ । ୧।

ଗାଲରେ ଶ୍ରୀଗୁରୁ ଖୁଦାମାର ପାହା
ବତାଇ ଅଛନ୍ତି ତୋ ଦୋଷା ଦନ୍ଦ।
ହାଲକୁ ସେ କଥା ପାଶୋର ନ ପକା
ଅକାରଣେ କାମେ ହୋଇଣ ଛନ୍ନ ।୨।

ମାଲ୍‌ପାହା ଯେତେ ରଖିଛୁ ଗୁପତେ
ସେଥି ନାହିଁ ତୋର ସୁପ୍ରୟୋଜନ ।
ଖ୍ୟାଲ ନ ମଣ ମୋ ଯଥାର୍ଥ କଥାକୁ
ଧବ୍ୟ ବୃଦ୍ଧି ଧଅ ନୋହୁ ଉଛନ୍ନ । ୩ ।

ଲାଲ ପଦ୍ମପାଦ ଯୁଗଳ ସମ୍ପଦ
ବୋଲି ମଣିଥାଅ ଲଗାଇ ଧ୍ୟାନ ।
ଛାଲ ମଟେ ଭଲଗତ ଲେଖାଅ ତୁ
ବୈଷ୍ଣବ ଦାସର ଏ ନିବେଦନ । ୪ ।

—※—

## ସ୍ୱାଭିଷ୍ଟ ଲାଳସା

୭୯—( ବସିଲେ କଶୋରୀ ଉଠିଲେ କଶୋରୀ—ବୃନ୍ଦେ )

ହା ଗୌରାଙ୍ଗ ବୋଲି,     କେବେ ମୋ ନୟନୁ,
ବହିବ ଲୋତକ ଧାର ।

ଭାରତ ଭବନେ ମୁଁ ,  ସେ ଦୟା-ମୟଙ୍କୁ,
ଯାଚିବି ପାତକ ଭାର ।୧।
ଗୌର ନାମାବଳୀ,  ହୃଦୟ ସମ୍ବଳ,
କରି ଲମ୍ବାଇବ ହାର ।
ଗୌର ଗୌର ବନ୍ଧୁ,  ଶୂନ୍ୟେ ଉଡ଼ିଯିବ,
ଏ ଜୀବ ତରଣୀ ପାର ।୨।
ସତେ ଶ୍ରୀ ନିତାଇ,  ଦେବେ ମୁକୁତାଇ,
ଏ ମାୟା ବନ୍ଧନ ଭାର ।
ଶ୍ରୀଗୁରୁ ଅଙ୍କରେ  ଜଞ୍ଜାଳ ଜାଲକୁ
ଛିଣ୍ଡାଇବ କରି ସାର ।୩।
ଅନନ୍ତ ସଂସାର  କେ ନୁହେ କାହାର
ସବୁ ବନ୍ଧୁ ବୃନ୍ଦ ଦାର ।
ବଳଭଦ୍ର ଦାସ  ବୋଲେ ଏବା ସିନା
ଘୋର ମୋ ନୟନ ତାର ।୪।



## ଆଶା

୮୦—( ଅଳା ଗୋ ମନାନନ୍ଦମୂର୍ତ୍ତିକି— ବୃନ୍ଦେ )

ସତେ କି କୃପା ହୋଇବ ମୋରେ ।
ବନ୍ଧା ହେବ ଗୌର ପ୍ରେମର ଡୋରେ । ଘୋଷା ।
ପଡ଼ି ଘାଣ୍ଟିହେଲି ଭବମାୟା ଘୋରେ ।
ଭଣ୍ଡିନେଲେ ଷଡ଼ ଏ ଖଣ୍ଡ ଦେହରେ ।୧।
ପାଷଣ୍ଡ ମଦ୍ୟପ ମୁଁ ନିଶା-ଘୋରେ ।
ତେଜ ବଳେ ଝାପଶ ତେଜ ଚକ୍ଷୁ ଘୋରେ ।୨।
ସବୁତ ଜଣାଇଁ ଦେଇଛି ତୋରେ ।
ତୋତେ ଗୃହୁଁ ସବୁ କଷ୍ଟ ପାଶୋରେ ।୩।

ନ ଗଣେ ତାହାକୁ ତୋ ଭୃତ୍ୟ କୋରେ ।
ନ ପଡ଼ୁ ବୈଷ୍ଣବ ବଞ୍ଚମ ଭେଦରେ । ୪ ।



## ଜୀବନଯାତ୍ରା

୮୧—( ଦଅ କୃପା ବରଷି, କୃଷ୍ଣ ହେ—ବୃତେ )

ସରବ କେବେ ମୋ ଜୀବନ ଯାତ ହେ, ଗୌରାଙ୍ଗ ।
ଦୟାମୟ, ପ୍ରଭୁ । ଅନାଥ ନାଥ । ପୋଷା ।

ଏ ଦେହରେ କେତେ ପାତକ ଅର୍ଜିଛି
ଜାଣି ଜାଣି ସଦା ଆହେ ଅଚ୍ୟୁତ ।
ନୋହୁବ ଙ୍କ କ୍ଷମା କ୍ଷୀର-ସିନ୍ଧୁ-କେମା
ହୃଦୟ ବନ୍ଧଭ ଭକ୍ତଙ୍କ ଭ୍ରାତ ହେ ।୧।

ଆଜନ୍ମ କାଳରୁ ତୁମ୍ଭ ଶ୍ରୀଚରଣ
ଆଶ୍ରେ କରିଅଛୁ ଏ ଅରକ୍ଷିତ ।
ଭୃତ୍ୟପଣକୁ ମୁଁ ଯୋଗ୍ୟ ନୁହେ ଡଳେ,
ଅଧମ ପାମର ପାଷଣ୍ଡ ମାନ ହେ ।୨।

ଏ ସଂସାର ଭର ଖୋଜଲେ ମୋ ପର
ନ ଥିବେ କେ ଜଣେ ଦୁଷ୍କୃତବନ୍ତ ।
ମର୍କଟ ବୈରାଗ୍ୟ ଦେଖାଇ ବୁଲୁଛି
ଅଜ୍ଞାନ ଅନ୍ଧାରେ ନ ଦିଶେ ପଥ ହେ ।୩।

ଗୋଟିଏ ନାମରେ ଗୋଟିଏ ପାପ ଯେ
ହରଣ ହୁଅଇ, ଶାସ୍ତ୍ର ଉକତ ।
ବଇଷ୍ଣବ ଦାସ ତେଣୁ ବଡ଼ ଆଶ
କରୁଛି କ ହେବ କାଣିଘଁତ ହେ ।୪।



## ସ୍ୱପନ ପ୍ରତିମା

୮୨—( ପରମ ଯାତନା ସହା ପତ୍ନିଲ ଯାହା -- ବୃତ୍ତେ )

ସ୍ୱପନ ପ୍ରତିମା ମୋର ନଜର କିଶୋର ।,
ଦେଖା ଦେଇ ଆହା କେଉଁଣେ ହୋଇଲେ ଅନ୍ତର ।
ନୂଆ ନଟବର । ମାଧୁରୀ ମୂରତି ଚିତ୍ତଚୋର ।୧।
ମନ୍ଦ ମନ୍ଦ ହାସେ ତାଙ୍କ ସୁମଧୁର କଥା ।
ଶୁଣାଇଲେ ପଦେ ଯାହା ହଜାଇଣ ମଥା ।
ମନୁ ଯାଉନାହିଁ । ଖୋଜି ଖୋଜି ତାଙ୍କୁ ପାଉନାହିଁ ।୨।
ଶୁଦ୍ଧ ସୁବର୍ଣ୍ଣକୁ ଜିଣି ଶ୍ରୀଅଙ୍ଗ ମାଧୁରୀ ।
ନୟନ ଯୁଗଳ ମୋର ବହୁଅଛି ଝୁରି !
ସେହୁ ଛବି ଗୋଟି । କିଣି ଆଣିଛୁ ଜପମାଳି ।୩।
ପୁରୁଷ ଅଙ୍ଗରେ ସ୍ତ୍ରୀ ଭାବ ଯାଏ ଜଣା ।
ଚାହିଁବ ଯେ ଅବା ତାକୁ କଷ୍ଟେ ହେବ ବଣା ।
ହରେ କୃଷ୍ଣ ବୋଲି । ନାଚେ ହସେ କାନ୍ଦେ ଝୁଲି ଝୁଲି ।୪।
ବନ୍ଧୁଳା ପରସ୍ପେ ହଣେ ମାଝ ବାଣେ ରହି ।
ଅନ୍ତର ହେବାରୁ ହୃଦ ବଡାଉ ହୁଅଇ ।
ଏହେ ଠକ ସେ କି ? ବୈଷ୍ଣବ ଦାସକୁ ଦେଲେ ଠକି ।୫।

—*—

## ଷୋଳନାମ ବତିଶାକ୍ଷର

୮୩—( ଦାଣ୍ଡରେ ଶୁଭିଲା ରାମକୃଷ୍ଣ କଳକଳ—ବୃତ୍ତେ )

ଷୋଳନାମ ବତିଶ ଅକ୍ଷରେ ପରମାନନ୍ଦ ।
ଭଜନାମ ଛଅକ୍ଷରୁ ବୁଝିବେ ଭକ୍ତ ।
ହରେ କୃଷ୍ଣ ରାମ ଜାଣ । ନାମାର୍ଥ ପରିଚାଯର ଅର୍ଥ ଖୋଜାଅଣ ।୧।
ସଦଗୁରୁ ବିନା ଏହା କେ ବୁଝାଇ ପାରେ ।

ସର୍ବେ କର୍ଣ୍ଣ ଫୁଙ୍କି ଦ'ନ୍ତି ସିନା ଗୃହଜନରେ ।
ମର୍ମ ନ ଜାଣନ୍ତି ତେଣୁ । ଗୁରୁ କୃତ୍ୟ କରୁଥାନ୍ତି ଠକ ନେବାପାଇଁ ।୨।
କଳିଯୁଗର ତାରକ ବ୍ରହ୍ମ ନାମାମୃତ ।
ଶୁଣି ଯେ ଚିହ୍ନାଇ ଜାଣେ ସେହୁଟି ମହାନ୍ତ ।
ଭକ୍ତିରତ୍ନ ମହାଜନେ । ଗୌର ପରିକର ଶୁଦ୍ଧ ବୈରାଗୀଗଣେ ।୩।
ପତିତପାବନ ହରି ନଦୀୟା-ବିହାରୀ ।
କୃପା ପାତ୍ର ହୁଅ ଗୌରଭକ୍ତ ଆଶ୍ରେ କରି ।
କହେ ବୈଷ୍ଣବ ଦାସ । ଶ୍ରୀଗୁରୁ ଆଜ୍ଞାରେ ଛେଦ ମାୟାମୋହ ପାଶ ।୪।

—*—

## ଜଣାଣ

୮୪—( ଶ୍ୟାମନାଗର ହେ, ଏ ବେଶ ହୋଇବ ନାହିଁ—ବୃତ୍ତେ)

ବାଜି ଯିବଟି ହେ, ତୁମ୍ଭ ନାମେ ସଦା ଢକ୍କା ।
ରାଜାବାଷ ଯେତ ଆଜ ନ ଶୁଣିବ ପାଜି ଅବଳିତ ତଙ୍କା । ଘୋଷା ।
ଯା ନଗର ଜରିଅଛୁ ହେ ଶ୍ରୀହରି ତାହା ମୋ ନ ହେଉ ଫିକା ।
ସ୍ୱପ୍ନ ନ ଯାଉ ମୋହର ଏହୁ ପଣ ଉଡ଼ୁଥାଉ ଶ୍ରୀ ପତାକା । ୧ ।
* କାଜୀ ଦଳାଙ୍କ ବନା ମୋ ଅନ୍ୟଗତ ଏ ଭବେ ନାହିଁଟି ଏକା ।
ସାଜନ୍ତୁ ସମ୍ଭାର କେତେ କାରଣେ ମୁଁ ସେଥିରେ ନ ବାନ୍ଧୁ ଧକା ।୨।
ମାଜ ପ୍ରେମ ଭକ୍ତି ରତ୍ନ ଅଳଙ୍କାର ଶ୍ରୀଗ୍ରନ୍ଥରେ ହେବ ଦେଖା ।
ରଜ ନ ହେଲେ କାହିଁକି ମୁଁ ଡାକିବି ଆହେ ଭକ୍ତ-ମନରଙ୍କା । ୩ ।
ଆଜୀବନୁ ତବ ଶ୍ରୀପଦ୍ମ ଚରଣେ ହୋଇଛୁତ ମୁଣ୍ଡ ଭଙ୍କା ।
ସାଜବଳ ଦୁଃଖୀ ବୈଷ୍ଣବ ଦାସର ହୃତ ଅବଳୁଣ ଲେଖା ।୪।

———

* କାଜୀ—ଜନୈକ ମୁସଲମାନ ରାଜା

# ଯୁଗଳ ମାଧୁରୀ

୮୫—( ପ୍ରାଣ ସର୍ବିମାରେ ବାଲ ମୁଁ କ କଜେ ବୁଢ଼ଲ—ବୃତ୍ତେ )

କେଡ଼େ ସୁନ୍ଦର ଗୋ, କଳା ଗୋରୀ ମିଶା ମୂରତି । ଘୋଷା ।

ଶ୍ରୀ ଗୌରାଙ୍ଗ ନଟବର, ଧୀର ଲଳିତ ଶରୀର;
ଶିରେ ସୁବର୍ଣ୍ଣ ଜୀର ଘେନି ପ୍ରିୟ ପରିକର ।୧।
ମୁଖେ ମନ୍ଦମନ୍ଦହାସ, କଟାକ୍ଷ ନେତ୍ର ବିଳାସ,
ଟଳିବଣ ତା ଘନ କେଶ, କୋଟିଏ ଚରମ ଦେଶ ।୨।
ପରିଧାନ ପୀତପଟ୍ଟ, କାଞ୍ଚିନ ସୁଧା ଲମ୍ପଟ,
ଶ୍ରୀ ବ୍ରଜଲୀଳା ପ୍ରକଟ, କରେ ଜଗନ୍ନାଥ ଗୃହ ।୩।
କହେ ବଇଷ୍ଣବ ଦାସ, କି ତପ କଲେ ଶ୍ରୀବାସ,
ତାହାଙ୍କ ଅଙ୍ଗଣେ ରାସ; ନିତ୍ୟେ ହେଉଛି ପ୍ରକାଶ ।୪।



# ଦୃଢ଼ବ୍ରତ

୮୬—( ଯାହା କର ଦେଲେ ଅଟେ ଶ୍ୟାମବନ୍ଧୁ—ବୃତ୍ତେ )

ଯାଉଥିବେ ଜାତି କୁଳ କେ ସଜନୀ, ଗୌରାଙ୍ଗ ଦାସୀ ମୁଁ ହୋଇବି ।
ନଦୀୟା ପସରକୁ ମୁଣ୍ଡରେ ମୁଣ୍ଡାଇ ନେତ୍ରମାନେ ଘଡି ଧୋଇବି । ପଦ

ଗୋରା ଗୋରା ବୋଲି ରଜନୀ ଦିବସ
ଘୋଷି ହେଉଥିବି ମୁଁ ତ ବାରମାସ
ଥିବା ଯାଏ ଜାଣ ଏ ଘଟେ ପରାଣ
ତା ଚଟାଳ ଶିରେ ବହିବି ।୧।
ଗୋରା ଗୁଣ ଗୀତ ଗାଉଥିବି ତୁଣ୍ଡେ
ଗୋରା ଭକତିମା ବୁଲଇଣ ଦାଣ୍ଡେ
ଗୋରାଲାଗି ସବୁ କଷଣ ସହି ମୁଁ
ପରମ ଆଦର ବହିବି ।୨।

ଗୋରା ଅନୁରାଗେ ଉଦାସିନୀ ହୋଇ
ଗୋରା ଭକ୍ତଙ୍କର ଅଇଁଠା ଗୋଟି ଇ
ଗୋରା ଧାମ ମାନ                    ବୁଲି ପ୍ରଦକ୍ଷିଣ
ମନରୁ କଳୁଷ ଦହିବ ।୩।
ଗୋରା ଏତେ ମୋତେ କରି ଦେଇ ପର
ସ୍ୱପ୍ନରେ କହିବ ଗୋରା ନାଥ ମୋର
ଗୋରା ପ୍ରେମାମୃତ                    ପାନ କରି ମୁଁ ତ
ଯେ ଯାହା କହିବ ସହିବ ।୪।
ଗୋରାରୂପେ ହେଉଥିବ ପାଗଳିଣୀ
ଗୋରା ଲାଗେ ହୋଇଛି କାଙ୍ଗାଳିଣୀ ।
ଗୋରା ଚିତ୍ତ ଚୋର                    ବେଣୁ ଧର ସରି
ବୋଲି ସଂଗ୍ରାମରେ ଶୋଇବ ।୫।

——  —

## କାଞ୍ଚନ ଗୋରା

୮୭—( ଅକଡ ଦେଶ ବଡ ଠୋରା ରେ—ବୃନ୍ଦେ )

ଏହି ମୋ ଚିତ୍ତ ବିତ୍ତ ଚୋର, କାଞ୍ଚନ ଗୋରା
ପଡ଼ିଛି ନଦୀୟାରେ ଧରା । ଘୋଷା ।
ଚିହ୍ନର ଗ୍ରାହକ ଯେ,                    ଚିହ୍ନି ନଥିନ୍ତି କଳେ,
ହୃଦେ କରି ତା ନାମ ହାରା ।୧।
ଶଚୀଙ୍କ ସୁତ ବୋଲି,                    ଏହିଠାରେ ଶୁଣିଲି,
ଏତ ଯଶୋଦା ଦୁଃଖ ହରା ।୨।
ଗୋପପୁରେ ଏ ଥାଇ,                    ଯାହା କରିଛି ସହି
କହିଲେ ପୋଥି ହେବ ପରା । ୩ ।
ହରାଇଣ କ ନିଧି,                    ଧରିଛି ବାଇ ବୁଦ୍ଧି
ଶ୍ରୀ ବୃନ୍ଦାବନ ପ୍ରେମ ଚରା । ୦ ।

ତା ସେହୁ ଟିଅ ଟାଣି,    ଯେହୁ ବାଙ୍କ ଚୂଡ଼ାମଣି;
ଭୁଲନାହିଁ ସେ ଭୁଲୁ ଠଗ । ୫ ।
ନାଟୁଆ ପୁରନ୍ଦର,    ଜାଣେ କେତେ ଛନ୍ଦର,
ବୈଷ୍ଣବ ଦାସ ଭଣେ ସତ୍ୟ । ୬ ।

—⁂—

## ନବୀନ ସନ୍ନ୍ୟାସୀ

୮୮—( ଧୀର ଚନ୍ଦ୍ର ହୃଦ ପଦ୍ମ ମିହିର—ବୃତ୍ତେ )

କେ ଦେଖିଛ କାହିଁ ?
ନବୀନ ସନ୍ନ୍ୟାସୀ ନାମ ନିମାଇଁ । ଘୋଷା ।
ଶଚୀ ମାତାଙ୍କର ନୟନ ତାରା ।
ବିଷ୍ଣୁପ୍ରିୟାଙ୍କର ଗଳାର ହାର ।
ନଦୀୟା ବାସୀଙ୍କ ପ୍ରେମ ପସରା ।
ଏହିପଥେ ସେହି ଗଲେକି ପରା ।
( କେ ଦେଖିଛ କାହିଁ ) ।   ।
ପିନ୍ଧିଥିଲେ ଖଣ୍ଡେ ଗେରୁଆ ବାସ ।
ମୁଖେ ଝରୁଥାଏ ମଧୁର ହାସ ।
କହୁଥିଲେ ମୁହିଁ କିଶୋରୀ ଦାସ ।
ଏ ପଥେ ଗଲେକି ହୋଇ ନିରାଶ ।
( କେ ଦେଖିଛ କାହିଁ ) । ୨ ।
ଅଳପ ବୟସ ତାଙ୍କୁ ମାତର ।
ସାତ୍ତ୍ୱିକ ଭାବରେ ହୋନ୍ତି କାତର ।
ଦଣ୍ଡ କମଣ୍ଡଳ ଧରି ହାତର ।
ଏ ପଥେ ଗଲେକି ଛାଡ଼ି ଗୃହର ।
( କେ ଦେଖିଛ କାହିଁ ) । ୩ ।

ବଦନ ଉପର କାଞ୍ଚନ ଗୋରା ।
ଚମ୍ପା କେତକୀରୁ ଅଧିକ ଗୋରା ।
ବୈଷ୍ଣବ ଦାସର ଦୁଃଖ ପାଶୋରା ।
ଏ ପଥେ ଗଲେ କି ସେ ମନ-ଚୋରା ।
( କେ ଲେଉଟିଛି କାହିଁ ) । ୮ ।

—○—

## ପ୍ରତ୍ୟାଶା

୮୯—( ସତେ ବୃନ୍ଦାବନେ ଏ ଗାତ ନୟନେ—ବୃଢେ )
ସତେକି ନଦୀୟା ଭଜୀୟା ଗୌରଙ୍କ କରୁଣା ପାତ୍ର ମୁଁ ହୋଇବି ?
ହେମ ବରଣୀୟାଁ ପ୍ରେମ-ଅଶ୍ରୁ-ନୀରେ ହୃଦୟକୁ ମୋର ଧୋଇବି ।୧ ।
ସଂକୀର୍ତ୍ତନ ସ୍ଥଳେ ବୈଷ୍ଣବ ମଣ୍ଡଳେ ସାଷ୍ଟାଙ୍ଗେ ପ୍ରଣମି ଶୋଇବି ।
ସାଧୁ ସନ୍ତଙ୍କର ବୋଲଇ କଙ୍କର ଅଙ୍ଗକୁ ମସ୍ତକେ ବହିବି । ୨ ।
ସ୍ୱଚ୍ଛେ କୀର୍ତ୍ତିମୀୟା ଭକତମାନଙ୍କ ପଛେ ରହି ପାଳି ଗାଇବି ।
ଗଜର ମୋହର ସରବସ୍ୱ ଚଳି ଆନନ୍ଦରେ ଡାଳି ଦାଇବି । ୩ ।
ଗୌର ଭକ୍ତେ ଯାହା ଛୁଇଁଦେବେ ତାହା ମହା ସ୍ୱର୍ଗ ମଣି ଖାଇବି ।
ରଜନୀ ଦିବସ ହୋଇଣ ଉଲ୍ଲାସ ଗଜର ମୂରତି ଧ୍ୟାଇବି । ୪ ।
ଶ୍ରୀ ଶ୍ରୀ ନିତ୍ୟାନନ୍ଦ ଗଜର ଗୋବିନ୍ଦ ଦରଶନ ଯେବେ ପାଇବି ॥
ବୈଷ୍ଣବ ଦାସ ବୋଲେ ମୋ କଳୁଷ ବୋଝକୁ ଦୂରେ ପକାଇବି ॥

— ✻ —

## ଅନ୍ୱେଷଣ

୯୦—( ଏ ମାୟା ସଂସାରେ ଭବ କାରାଗାରେ—ବୃଢେ )
ତୁଳସୀ ମାଳିଆ ପ୍ରେମ ପାଗଳିଆ ନାଚ କଙ୍ଗାଳିଆ କାହିଁ ?
ସେ ଦେଶରୁ ଆସି ଏ ଦେଶେ ଖୋଜୁଛି ତାର ଭେଟ ପାଉ ନାହିଁ ।
କେ ଦେଖିଛ ଭାଇ ।
କହି ଦିଅ ମୋତେ ଦୟାବନ୍ତ ହେ । ୧ ।

ନାମଟି ତାହାର ଗୌରାଙ୍ଗ ସୁନ୍ଦର ଧାମ ନଦୀଆ ନଗରୀ ।
ପାମର ପତିତମାନଙ୍କର ବନ୍ଧୁ ତୋର-ଭଜନୀଙ୍କ ଧାରୀ ।
ଶ୍ୟାମ ଗୌର ତନୁ ।
ଯୋଡ଼ଶ ଗୋଟିଏ ଶଚୀ—ସୁନୁ । ୨ ।
ବିଷ୍ଣୁପ୍ରିୟା ବୋଲି ପରମ ସୁନ୍ଦରୀ ନବଯୁବା ସୁକୁମାରୀ ।
ତାକୁ ଏକା କରି ଅଛିନ୍ତି ବାହାର ପଡ଼ନ୍ତି ସେ ଜ୍ଞାନ ହାରି ।
ଭବ ଅନାହାର ।
ଭେଦେ ତାହାଙ୍କ ମୋ ହୃଦହାର । ୩ ।
ଏକାଇର ବଳା ନୟନ ପିଚ୍ଛିଳା ନିମାଇଁରେ ମୋର ବୋଲି ।
ଅଛନ୍ତି ଜନନୀ ଡାକନ୍ତି ବାହୁନି ମାଳିନୀ ବୁଝାନ୍ତି ଟେକି ।
ଦେଖି ସେ ଅବସ୍ଥା ।
ବୈଷ୍ଣବ ଦାସର ମନେ ବ୍ୟଥା । ୪ ।

—୦—

## ଚରଣଚିହ୍ନ

୯୧—( ସଖି ଗୋ ମୋର କୃଷ୍ଣଙ୍କୁ ଆଣ—ବୃନ୍ଦେ )

ଏହୁତ ସେହୁ ଚରଣ ଚିହ୍ନ ।
ଜାହାଙ୍କ ଅଛି ଶ୍ରୀ ଶଚୀ-ନନ୍ଦନ । ଘୋଷା ।
ଗରୁଡ଼ ପଛରେ ରହୁ ମୋ ଗୋରା ।
ଦେଖୁଥିଲେ ଜଗନ୍ନାଥଙ୍କୁ ପରା । ୧ ।
କି ଭାବେ ମଜ୍ଜିଣ ପଡ଼ନ୍ତେ ଟଳି ।
ମୃଗ୍ଧନ ପଥର ଗଲା ତରଳି । ୨ ।
ବାମହସ୍ତ ଭରା ପାଷାଣ ଭାଙ୍ଗେ ।
ଅଦ୍ୟାପି ସେ ଚିହ୍ନ ଅଛି ସାକ୍ଷାତେ । ୩ ।
ପଦାବ୍ଜକରେ ଅଷ୍ଟାଦଶ ଲକ୍ଷଣ ।
ଚକ୍ରକୁଳିଶ ଧ୍ୱଜ ବଜ୍ର ପ୍ରମାଣ । ୪ ।

ସୁଧାର୍ଦ୍ଧ ଦସ୍ତୁର ମୃଗଙ୍କ ତଳା ।
ଦେଖନ୍ତ ଚେଡ୍ଡାରେ ଚସ୍ରକେ ସ୍ଥଳ । ୫ ।
ଧନ୍ୟ ଧନ୍ୟ ସେହୁ ବଡ଼ ବାବାଜୀ ।
ଭଲେ ଦେଢ଼େ କାଡ଼ି ଉପାୟ ଖୋଜ । ୬ ।
ପୁଷ୍ପ ଚନ୍ଦନରେ ଜଗାଇ ପୂଜା ।
ରଖାଇ ଅଚଳ୍ପ ବୈଷ୍ଣବୀ ଧ୍ୱଜା । ୭ ।
ସେ ଚରଣ ଚିହ୍ନ ଭକତମାନେ ।
ପରିକ୍ରମା କରି ଆନନ୍ଦ ମନେ । ୮ ।
ନମ୍ରଚନ୍ଦ୍ର ନତ ଭକତ ସ୍ତବେ ।
ସେବା ଭକ୍ତି ସେବା ମୁକତି ଲଭେ । ୯ ।
ପାମର ଅଧମ ବୈଷ୍ଣବ ଦାସ ।
କଲ ନାହିଁ ଯାହା ଶ୍ରୀକ୍ଷେତ୍ରେ ବାସ ।୧୦ ।
କଟେ ଅଟକ ଚୋଟ ପଠରେ ।
ପଡ଼ିଛୁ ଜପନ ଛଟ ପଟରେ । ୧୧ ।
ସେବେ ଶ୍ରୀ ଗୌରାଙ୍ଗ ଚରଣ ଚିହ୍ନ ।
ପୁଣି, କରିବ ଏ ପାପ ନେତ୍ରେ ଦର୍ଶନ । ୧୨ ।

—*—

## ଗୌର ବିରହିଣୀ

୯୨—( ମଧୁର ମଧୁର ସଖି ! କିସ୍ତଥ୍ ମଧୁର—ଭୃଙ୍ଗେ )
କି କହିବି ସଜନି ! ମୋ ହୃଦ ଦୁଏ ଫାଟି ଗୋ ।
ଛାଡ଼ିଗଲେ ନବଦ୍ୱୀପ ଗୌର ଗୁଣମଣି ଗୋ । ୧ ।
କି ବୁଦ୍ଧି କରିବି ଏବେ ହବଜନା ଯୋଗେ ଗୋ ।
ଗୌରାଙ୍ଗ ବିରହାନଳ ଲଭିଚ ଦେହେ ଗୋ । ୨ ।
କେଶବ ଭାରତୀ ତାଙ୍କୁ ଦେଲେ କି ମନ୍ତ୍ର ଗୋ ।
ସନ୍ୟାସୀ ହୋଇଲେ ପିନ୍ଧି କଉପୀନ ଡୋର ଗୋ । ୩ ।

ନ ଛୁଇଁବେ ବୋଲି ପ୍ରଭୁ କାମିନୀ କାଞ୍ଚନ ଗୋ ।
ଶଚୀର ଛଡ଼ାଇ ଦେଲେ ସଂସାର ବନ୍ଧନ ଗୋ । ୪ ।
ଅନ୍ତିମେ ବିଷ୍ଣୁପ୍ରିୟା ବଞ୍ଚିବ କପଟ ଗୋ ।
ନାଥ ବିନେ ନିମିଷକ ଲାଗେ ଯୁଗ ସମ ଗୋ । ୫ ।
କାନ୍ଦୁଛନ୍ତି ଶଚୀ ମାତା ମୁଣ୍ଡ କୋଡ଼ି ହୋଇ ଗୋ ।
ଦେଖିଲେ ତାଙ୍କ ଅବସ୍ଥା ଧୈର୍ଯ୍ୟ କେ ଧରଇ ଗୋ । ୬ ।
ଗଡ଼ିକାନ୍ଦେ ପଡ଼ିକାନ୍ଦେ କାନ୍ଦଇ ନଦୀୟା ଗୋ ।
କି କଲେ କି କଲେ ଆହା ଗୋରା ଶଚୀନୋଦଅ ଗୋ । ୭ ।
ବୈଷ୍ଣବ ଦାସ ତୋଳେ ସ୍ଥିର କର ମନ ଗୋ ।
କେ ଆନ କରିବ ଯାହା କପାଳ ଲିଖନ ଗୋ । ୮ ।

— — —

## ଶଚୀମାତାଙ୍କ ବିଳାପ

୯୩—( ସଂଗଡ଼ ମାତ୍ର ହେଲ ହେ ଶ୍ୟାମ—ବୃନ୍ଦେ )

ଆହେ ମୋ ଗୋରା ଗୁଣ ନିମାଇଁ ରେ ।
ନୀଳାଚଳ ପୁରେ ଯିବ କି ଧାଇଁ । ଘୋଷା ।
କେତେ ଧନ ଦେବତାଙ୍କୁ ମନାଇଁ ।
ପାଇଥିଲି ତୋତେ ବ୍ରତ କରାଇଁ ରେ । ୧ ।
ହରୁଥିଲି ଦୁଃଖ ତୋ ମୁଖ ଚୁହିଁ ।
ଏବେ ସେ ମୁଖ ଲୁଚାଇଲୁ କାହିଁ ରେ । ୨ ।
ତୋହ ବିନୁ ମୋର କେହୁତ ନାହିଁ ।
ଓଡ଼ିଶା ଦେଶରେ ରହିଲୁ ଯାଇଁ ରେ । ୩ ।
କି ମନ୍ତ୍ର ଦେଲେ କେଶବ ଗୋସାଇଁ
ସନ୍ନ୍ୟାସୀ ହୋଇଲୁ କି ସୁଖ ପାଇଁ ରେ । ୪ ।
ବିଷ୍ଣୁପ୍ରିୟା ବଧୂ ତୋତେ ନ ପାଇ ।
ବସିଛି ଦେବାକୁ ପ୍ରାଣ ହରାଇ ରେ । ୫ ।

କି ବୁଝି କରିବ କେଉଁଣେ ଯିବଇଁ ॥
ତୋ ଗୁଣ ସୁମରି ମାରୁଛନ୍ତି ଝାଇଁ ରେ । ୨ ।
ଏତେ ବୋଲି କାନ୍ଦନ୍ତି ଶଚୀ ଆଈ ॥
ବଇଷ୍ଣବ ଦାସ ଭଣେ ବୁଝାଇ ରେ । ୩ ।

—০—

## ବିଷ୍ଣୁପ୍ରିୟାଙ୍କ ବିଳାପ

୯୪—( ଶୟନେ କାଳିଆ ସ୍ୱପନେ କାଳିଆ—ବୃନ୍ଦେ )

କାନ୍ଦ କାନ୍ଦ କରି ନୟନର ବାରି
ନୟନ କୋଣେ ମାରୁଛି ହେ ।
ଧିକ ଏ ନିର୍ଲଜ ଜୀବନ ମୋହର
ନ ଯାଇ ଯାହା ରହୁଛି ହେ ।
କାନ୍ତ ବିରହିଣୀ ହୋଇ । ବଞ୍ଚିବାର ପ୍ରୟୋଜନ ନାହିଁ ହେ ।୧।
ଯେଉଁ ଧନଠାରୁ ନବଦ୍ୱୀପଚନ୍ଦ୍ରେ
ଘେନିଥିଲି ଉପଡ଼ି ଧନ ହେ ।
ସେ ଧନୁ ହୃଦୟ ଆକାଶଟି ମୋର
ଘୋର ଅନ୍ଧାରେ ଆଚ୍ଛନ୍ନ ହେ ।
ଝୁରି ଝୁରି ନିଶିଦିନ । ଅସ୍ତଚନ୍ଦ୍ର ହେଉଛନ୍ତି ଜାଣ ହେ । ୨ ।
କେ କେତେ ପ୍ରକାରେ ବୋଧି କହୁଛନ୍ତି
ନ ବୁଝେ ଅବୋଧ ମନ ହେ ।
ନେତ୍ରେ ନାଚୁଛନ୍ତି ଶ୍ରୀ ଗୌରାଙ୍ଗ ମୂର୍ତ୍ତି
ନ ପାଉଛନ୍ତି ଦରଶନ ହେ ।
କି କରିବ କାହିଁ ଯିବ ? (ପ୍ରଭୁ) ତୁମ୍ଭ ବିନେ ଜୀବନ ହାରିବ ହେ ।୩।
ଭକତଙ୍କ ହିତେ ସନ୍ୟାସୀ ହୋଇଲ
ଜଗତ ମଙ୍ଗଳ ପାଇଁ ହେ ।

ଏ ଘାନା ସ୍ଥାନାର ମନକଥା ଅହା
କେ ଜାଣିବ ପ୍ରାଣଧାରି ହେ ।
ସନ୍ନ୍ୟାସୀ ଘରଣୀ ହୋଇ । ଘରେ ରହିବାର ନ ଯୋଗାଇ ହେ ।୪।

—*—

## ନଦୀୟାବାସୀଙ୍କ ବିଳାପ

୯୫—( ଅହା ନାଥ ପ୍ରାଣନାଥ ମୋହନ ମୂରଲୀଧାର—ବୃନ୍ଦେ )

ନବଦ୍ୱୀପ ପୂର୍ଣ୍ଣଚନ୍ଦ୍ର ହେ ପ୍ରଭୁ ଗୌର ଗୋବିନ୍ଦ
ପତିତ ପାବନ ଜନବନ୍ଧୁ ।
କି ଦୋଷ ଦେଖି ଆମ୍ଭର ଚାଲିଗଲ ପାତପର
ଅଗତିଙ୍କ ଗତି କୃପାସିନ୍ଧୁ ହେ, ଗୌରଚନ୍ଦ୍ର ହେ ।
ତୁମ୍ଭ ବିନା ନଦୀୟା ଅନ୍ଧାର
ନ ଦିଶଇ ବୁଦ୍ଧି ବାଟ ବଞ୍ଚିବୁ ତୁମ୍ଭର ହେ ।୧।
ଶ୍ରୀବାସ ମନ୍ଦିର ଶିରୀ ହୋଇଲାଣି ହତଶିରୀ
ନୋହିବାରୁ ନାମ ସଙ୍କୀର୍ତ୍ତନ ।
ଶ୍ରୀ ବ୍ରଜ ପ୍ରସଙ୍ଗେ ମାତି ନେତ୍ରୁ ନାହିଁ ଦିନ ରାତି
ଏବେ ହେଲା ସେ ସବୁ ସ୍ୱପନ ହେ; ଗୌରଚନ୍ଦ୍ର ହେ ।
ଭକ୍ତ ମାନେ ହେଉଛନ୍ତି ଝୁରି ।
ଭଣ୍ଡିଲେ ନଗର କଣ୍ଠା ହୋଇଲା ଆମ୍ଭର ହେ । ୨ ।
ଯାହାରେ ତାହାର ସ୍ନେହେ ଯାଚି ଦେଇଥିଲ ନାମଶାଟୀ
ପ୍ରେମଭକ୍ତି ସୁଧାରସ ପଣା ।
ସେ ଭାଗ୍ୟ ଅମ୍ଭର୍ଭ କାହିଁ କେ ନେଇଗଲା ଚୋରାଇ
ଶୂନ୍ୟ ଦିଶେ କୀର୍ତ୍ତନ ଅଗଣା ହେ, ଗୌରଚନ୍ଦ୍ର ହେ !
ଖୋଲ ଖଞ୍ଜଣି ସବୁ ନାହିଁ ଧ୍ୱନି ।
ତୁମ୍ଭ ବିନେ କେଉଁପରି ଧରିବୁ ଜୀବନ ହେ । ୩ ।

ମନେ ଯଉ ଥିଲା ଏହା ଅଗୁଁ ନ କହିଲ ଯାହା
ହୃଦହଣା ସନ୍ୟାସ ବାରତା ।
ସେଥିକ ଯେଙ୍ଗା ଇଚ୍ଛାୟୁ କହିଥାନ୍ତୁ ଦୟାମୟ
ପଛକୁ ନ ଥାନ୍ତା ଏତେ ଚିନ୍ତା ହେ, ଗୌରଚନ୍ଦ୍ର ହେ !
ଥରେ ହେଲେ ଦେଖା ଦଅ ଅସି ।
କାନ୍ଦ କହଇ ବୈଷ୍ଣବ ଦାସ ବ୍ରଜବାସୀ ହେ ।୪।

---

## ଅନ୍ତିମ ଦୃଶ୍ୟ

୧୬—(ପର ଚଳେଣି ଟଗା ମୋର ପରଶମଣି—ବୃତ୍ତେ )
ଜୀବନ ଦୀପଟି ଲିଭ ଲିଭ ଯାଉଛି ।
କି ବେଗରେ ଝଞ୍ଜା-ବାୟୁ ମାଡ଼ି ଆସୁଛି । ଘୋଷା ।
ସହିଲଣି କ୍ଲେଶ ଢେଲ ବାସନାବନ୍ତ ନିର୍ମୂଳ
କମେ ଅନ୍ଧକାର ଅସି ମାଡ଼ିବସୁଛି ।୧।
ସାରୁ ପ୍ରକୃତି ନାଟ୍ୟ ଭବଲୀଳା ଅଭିନୟ
ଧୀରେ ଧୀରେ ଟରଦାଟି ଖସିପଡ଼ୁଛି ।୨।
ଦେଖି ଏହୁ ବିଶ୍ୱପିତା ମନେ ବଡ଼ ଲଗେ ଦବା
ପ୍ରଳୟ ସିନ୍ଧୁ କି ଢେଉ ଢେଲି ଆସୁଛି ।୩।
ଚୈତନ୍ୟାତ୍ମା ଯିବେ କାହିଁ ? ମାଟିପିଣ୍ଡ ଏଥି ଥୋଇ
ନ ବୁଝି ଗୌରଙ୍କ କାନ୍ଦ କାନ୍ଦ ଶୋକୁଛି ।୪।

---

## ନାମରସାୟନ

୪୭—'ବ୍ରଜରାଜ ସୁତ ଫେ ଦେ ଟଉ ମିତ— ବୃତ୍ତେ)
ନାମ ରସାୟନ, ପାନ କର ମନ
କାମ କୋଧ ପରହର ହେ ।

ପାମର ବୁଦ୍ଧିଟା, ଛାଡ଼ ନୁଆ ମୋଟା,
ସାମର୍ଥ ଥାଇଁ ତୋହର ରେ । ଘୋଷା ।
ରାମ ନାରାୟଣ, ଶ୍ରୀ ମଧୁସୂଦନ,
ହରେ କୃଷ୍ଣ ହରେ ଭଜ ଅନୁକ୍ଷଣ ।
ଯାମକୁ ଯାମ ତୋ ଧନ ଚାଲିଯାଏ
ଅସୂୟକୁ ସଙ୍ଗ କର ରେ ।୧।
ଧାମ ଶ୍ରୀ ନଦୀୟା ପୂର୍ଣ ବୃନ୍ଦାବନ
ଭ୍ରମଣ କର ତୁ ମିଛେ ନୋହୁ ଭ୍ରମ ।
ଚାମର ଅଲଟ ଧର ତୁ ବ୍ୟଜନ
କର ଯତ୍ନେଁ ରାଧା ହରି ରେ ।୨।
ଶ୍ୟାମ ନଟବର ସୁନ୍ଦର ବିଗ୍ରହ, ରାଧାଭାବେ
ଅବତୀର୍ଣ୍ଣ ଗୌର ଦେହ,
ସାମନ୍ତ ତୋହର ଅନନ୍ତ ବଳଦେବ
ମୋହନ ନେବେ ଉଦ୍ଧରି ରେ ।୩।
ତାମରସପଦେ ପଶ ତୁ ଶରଣ,
ଖଞ୍ଜି ତହିଁ ନିଷ୍ଠା ସେବା ଆଭରଣ,
କହେ ଦୁଃଖୀ ଦାସ ବୈଷ୍ଣବ ଚରଣ
ଗୁରୁ ଆଜ୍ଞା ଶିରେ ଧରି ରେ ।୪।

---

## ମନଃଶିକ୍ଷା

୯୮—(ମୂଳବର ବାଣୀ)

ଆରେ ମୂଢ଼ ମନ ଶୁଣ । ସୁମର ଗଉର ଗୁଣ ।
ଲଭିବୁ ପରମ ସୁଖ । ଯିବ ତୋ ଦୁଃଖ ରେ ।୧।
ଶ୍ରୀଗୁରୁ ଯା ଚିନ୍ତ କହୁ । ହେଜ ସାଧୁ ସଙ୍ଗେ ରହୁ । ହରି କଥା ପୋଥି ପଢ଼ । ଦୁଃଖେ ନ ପଡ଼ରେ ।୨। ହୋଇ ହରଷ ବଦନ ।

ହରି ନାମ ସଙ୍କୀର୍ତ୍ତନ । ପିଅ ପ୍ରେମାମୃତ ରସ । ଗ୍ରଳି ନ ବସବେ ॥ ଜଡୟ ବାସନା ମୁଞ୍ଚ । ଭକ୍ତି ଧନ ଯତ୍ନେ ସଞ୍ଚ । ଛାଡ଼ ଦମ୍ଭ ଅଭିମାନ । ଗର୍ବ ଗୁମାନରେ ।୪। ଯୁଗଳ ପଦାରବିନ୍ଦ । ସେବ ତୁ ହୋଇ ଅନନ୍ଦ । ଦାସ ବଇଷ୍ଣବ ଭଣି । ଏ ଶିକ୍ଷା ବାଣୀରେ ।୫।

---

## ହରିଧ୍ୱନି

୯୯—(ନିତାଇ ଏନେଛ ନାମ—ବୃତଗ୍ର)

ହରି ହରି ବୋଲଭାଇ । ହରି ହରି ବୋଲ ରେ ।
  ଗୌର ହରି ବୋଲ ଭାଇ ! ଗୌର ହରି ବୋଲ ରେ । ଘୋଷା ।
ହାତେ ତାଳି ଦିଅ ଭାଇ । ମୁଖେ ନିଅ ନାମ ରେ ।
  ଭଜ ଗୌର ନିତ୍ୟାନନ୍ଦ ବୋଲ ରାଧେ ଶ୍ୟାମ ରେ ।୧।
ହରେ କୃଷ୍ଣ ହରେ ରାମ ଘୋଷ ବାରମ୍ବାର ରେ ।
  ଅନ୍ତକାଳେ ନ ପାଇବ ଶମନ ଦୁଆର ରେ ।୨।
ଯାଗ ଯଜ୍ଞ ତପ ବ୍ରତ ସବୁ ଅକାରଣ ରେ ।
  (ଏ) କଳିଯୁଗେ ନାମ ବିନେ ଗତି ନାହିଁ ଜାଣ ରେ ।୩।
ଦେଶକାଳ ନିୟମଟି ନାହିଁ ଏଥି ପାଇଁ ରେ ।
  ଥାଅ ଯଥା ତଥା ଭାଇ ନାମ ଭଜ ତହିଁରେ ।୪।
ବଇଷ୍ଣବ ଦାସ ବୋଲେ ନୁହ ଅଳସୁଆ ରେ ।
  ହରିଧ୍ୱନି କର ସଦା ପୁଲକାଇ ହୁଅ ରେ ।୫।
ହରିବୋଲ ହରିବୋଲ ହରିବୋଲ ହରିବୋଲ ।
  ଗୌର ହରିବୋଲ ହରିବୋଲ ହରିବୋଲ ହରିବୋଲ ।୬।
ହରି ହରି ବୋଲ ହରି ବୋଲ ହରି ବୋଲ ହରି ବୋଲ ।
  (ଇତ୍ୟାଦି ବାରମ୍ବାର ଗାନ ହେଉ ଉଦଣ୍ଡ ବାଦ୍ୟ ତାନମାନ)

---

## ହରିଲୁଟ

୧୦୦—(ହରିବୋଲ ନିତ୍ୟାନନ୍ଦ ମାଳାଚନ୍ଦ ଚଳେ—ବୃତ୍ତେ)

ଆସରେ ଆସରେ ଭାଇ ଆସ ଆସ ଧାଇଁ ।
ହରିନାମ ଧନ ଲୁଟି ନିଅ ହୃଦ ପାଇଁ ରେ ।୧।
ଯେତେ ନେବ ତେତେ ଅଛି ନ ହୁଅଇ ଶେଷ ।
ଅତି ଆନନ୍ଦ ପାଇବ ମଧୁର ଆବେଶେ ରେ ।୨।
ଏକବାର ନେଲେ ଶତ ଗୁଣ ହୁଏ ବୃଦ୍ଧି ।
ଭବରୋଗକୁ ଏ ନାମ-ପ୍ରେମଟି ଔଷଧି ରେ ।୩।
ଧନ ମଧ୍ୟେ ମହାଧନ ଅଟଇଟି ଏହୁ ।
ଭାଗ୍ୟବନ୍ତ ପ୍ରାଣୀଙ୍କିଟି ସୁଲଭ ସଦାଇ ରେ ।୪।
ଅପ୍ରାକୃତ ପଦାର୍ଥ ଏ ନୁହଇ ପ୍ରାକୃତ ।
ହରାଅନା ହରାଅନା ଏ ସୁଯୋଗ ମାନ ରେ ।୫।
ଶେଷେ ଭାବ ହେବ ସିନା ଯଦ କର ହେଳା ।
ଭବସିନ୍ଧୁ ପାର ପାଇଁ ଏ ଅପୂର୍ବ ଭେଳା ରେ ।୬।
ବିନାମୂଲ୍ୟେ ଏହୁ ରତ୍ନ ହେଉଅଛି ବଣ୍ଟା ।
ଲୁଟି ନେବା ଜଟି ତେବେ ଭଣ୍ଡଥାଅ ଅଣ୍ଟାରେ ।୭।
ବଇଷ୍ଣବ ଦାସ ବୋଲେ ମୋ କରମେ ନାହିଁ ।
ସାଧୁସଙ୍ଗେ ହରିନାମ ନେବ ଅବା କାହିଁ ରେ ।୮।

———

ଶ୍ରୀ ଶ୍ରୀ ଗୁରୁ ଗୌରଚନ୍ଦ୍ର ଦେବାର୍ପଣମସ୍ତୁ ॥

—: ସମାପ୍ତ :—

ମୁଦ୍ରାକର—ଶ୍ରୀ ଦାଶରଥି ଦାସ, ଦାଶରଥି ପ୍ରେସ, କଟକ-୨—୧୯୬୦

